"ହି...ହି...ହି... ଏମାନେ ବି ମୋ ରସନା ପିଇ ପାରନ୍ତେକି"

କେତେ ନାରଙ୍ଗି ଯେତେ!






# ରସନା

ଭାରତର ସର୍ବାଧିକ ବିକ୍ରି ହେଉଥିବା
ସଫ୍ଟ ଡ୍ରିଙ୍କ କନସେନ୍‌ଟ୍ରେଟ

Mudra:A:PI:29

ଆଖି ଫେରିଯାଏ ବାରବାର...
ଦେଖି ଚମକ ସୁପର ରିନ୍ ର !




**ସୁପର ରିନ୍ ର ଶୁଭ୍ରତାର ଚମକ ଅନେକ ବେଶୀ**

ଅନ୍ୟ ଯେ କୌଣସି ଡିଟର୍ଜେଣ୍ଟ ଟେବଲେଟ କିମ୍ବା ବାର୍ ତୁଳନାରେ ଅଧିକ ଶୁଭ୍ର !

ହିନ୍ଦୁସ୍ଥାନ ଲିଭରଙ୍କ ଏକ ଉତ୍କୃଷ୍ଟ ଉତ୍ପାଦନ



# ଚନ୍ଦ୍ରମାମୁଁ

ଏପ୍ରିଲ ୧୯୮୨



## ବିଷୟ-ସୂଚୀ






ପ୍ରତି ସଂଖ୍ୟା : ୨-୫୦
ବାର୍ଷିକ ମୂଲ୍ୟ : ୩୦-୦୦



## ଆପଣ କ'ଣ ସତରେ ଆପଣଙ୍କ ପତ୍ନୀଙ୍କୁ ଭଲ ପାଆନ୍ତି ?

ଖାଣ୍ଟି କଥା ଅଛି । ଏହି ପ୍ରଶ୍ନର ଉତ୍ତର ଉପରେହିଁ ନିର୍ଭର କରୁଛି ଆପଣ କେଉଁ ପ୍ରେସର କୁକର ତାଙ୍କ ପାଇଁ ଆଣି ଦେବେ । ଧରନ୍ତୁ ଆପଣ ତାଙ୍କୁ ଅଳ୍ପ ଟିକିଏ ଭଲ ପାଆନ୍ତି । ତାହେଲେ ଯେ କୌଣସି ସାଧାରଣ ପ୍ରେସର କୁକର ହେଲେ ବି ଚଳିଯିବ । ଆଉ ଟିକିଏ ବେଶୀ ଭଲ ପାଆନ୍ତି ? ଆଉ ଟିକେ ଭଲ, ଆଉ ଟିକେ ନିର୍ଭରଯୋଗ୍ୟ କୁକର କିଣିଦେବେ ନିଶ୍ଚୟ ।

କିନ୍ତୁ ସେ ଯଦି ଆପଣଙ୍କ ପ୍ରାଣରୁ ବି ବେଶୀ ପ୍ରିୟ ହୋଇ ଥାଆନ୍ତି, ତାହେଲେ ସବୁଠାରୁ ନିରାପଦ ପ୍ରେସର କୁକର ହିଁ ତାଙ୍କପାଇଁ ଆଣି ଦିଅନ୍ତୁ। ଆଣି ଦିଅନ୍ତୁ ଗୋଟିଏ ନୂଆ ପ୍ରେଷ୍ଟୀଜ ।

### ନୂଆ ପ୍ରେଷ୍ଟୀଜ ସବୁଠାରୁ ନିରାପଦ କାହିଁକି ?




କାରଣ କେବଳ ନୂଆ ପ୍ରେଷ୍ଟୀଜର ହିଁ ଅଛି ଅନନ୍ୟ ଗ୍ୟାସକେଟ ରିଲିଜ ସିଷ୍ଟମ (ଜି.ଅର.ଏସ)।




ଏହି ଜି.ଅର.ଏସ. କୁକର ଢାଙ୍କୁଣୀ ସହ ଯୁକ୍ତ ଏପରି ଏକ ନିରାପତ୍ତା ବ୍ୟବସ୍ଥା, ଯାହା ଫଳରେ ପ୍ରେଷ୍ଟୀଜ ୧୦୦% ନିରାପଦ ।

ଜି.ଅର.ଏସ କିପରି କାମ କରେ ।

ଯଦି କୌଣସି କାରଣରୁ ଷ୍ଟିମ ଭେଣ୍ଟ ରୁନ୍ଧି ହୋଇଯାଏ, ତାହେଲେ କୁକର ଭିତରେ ଅତ୍ୟଧିକ ବାଷ୍ପ ସୃଷ୍ଟି ହୁଏ । ଆଉ ଯଦି ଆପଣଙ୍କ ସେଫ୍ଟି ପ୍ଲଗ ଗଳି ନ ହୋଇଥାଏ ତାହେଲେ କୁକର ନିକଟରେ ଥିବା ବ୍ୟକ୍ତିଙ୍କ ପକ୍ଷରେ ଏହା ବିପଜ୍ଜନକ ପ୍ରମାଣିତ ହୋଇପାରେ ।



ନୂଆ ପ୍ରେଷ୍ଟୀଜରେ କିନ୍ତୁ, ଏହି ଜମାଟ ବାଷ୍ପ ଗ୍ୟାସକେଟକୁ ଠେଲି ତଳୁଆଡୁ ନିରାପଦରେ ବାହାରି ଯାଏ । ଗୋଟିଏ ଚାମଚରେ ଗ୍ୟାସକେଟକୁ ଭିତରକୁ ଠେଲି ଦିଅନ୍ତୁ ଏବଂ ଆପଣଙ୍କ କୁକର ପୁଣି ଥରେ ବ୍ୟବହାର ପାଇଁ ପ୍ରସ୍ତୁତ ।

ନୂଆ ପ୍ରେଷ୍ଟୀଜରେ କୌଣସି ପ୍ରକାର ଆଶଙ୍କାର ପ୍ରଶ୍ନ ଉଠେନା । ସେଇଥି ପାଇଁ ଏହା ହିଁ ଭାରତରେ ସବୁଠାରୁ ନିରାପଦ ପ୍ରେସର କୁକର ଆପଣଙ୍କ ସବୁଠାରୁ ପ୍ରିୟଜନଙ୍କ ପାଇଁ ।

# ଯଦି ଆପଣ ସତରେ ଆପଣଙ୍କ ପତ୍ନୀଙ୍କୁ ଭଲ ପାଆନ୍ତି ତାହେଲେ ପ୍ରେଷ୍ଟୀଜ ଆଣିଦେବାକୁ ମନା କରିବେ କେମିତି ?




# ପ୍ରେଷ୍ଟୀଜ

ttk ଉତ୍ପାଦନ



# ଜହ୍ନମାମୁଁ

ସମ୍ପାଦକ : 'ଚକ୍ରପାଣି'
ସଞ୍ଚାଳକ : ନାଗି ରେଡ୍‌ଡୀ

---

ଏ ସଂଖ୍ୟାରେ ରହିଛି "ସୁନା ଓ ସୁଖ" ନାମକ ଗୋଟିଏ କାହାଣୀ । ଏହାର ତାତ୍ପର୍ଯ୍ୟ ଆମେ ଅନୁଭବ କରିବା ଲୋଡ଼ା । ଗଳ୍ପର ନାୟକ ସୁଖ ନ ଚାହିଁ ସୁନା ଚାହିଁଲା; ସେତିକି ନୁହେଁ, ଅନ୍ୟମାନେ କାଳେ ଦୁଇ ପଇସା ପାଇଯିବେ, ସେଥିପାଇଁ ସେ ସୁବର୍ଣ୍ଣ ସୁଯୋଗ ବି ହରାଇଲା !

## ଅମରବାଣୀ

ସତ୍ୟଂ ତପୋ ଜ୍ଞାନ ମହିଂସତା ଚ ବିଦ୍ୱତ୍ ପ୍ରଣାମଂ ଚ ସୁଶୀଲତା ଚ ।।
ଏତାନି ଯୋ ଧାରୟତେ ସ ବିଦ୍ୱାନ୍ ନ କେବଳଂ ଯଃ ପଠତେ ସ ବିଦ୍ୱାନ୍ ।

[ସତ୍ୟ ସାଧନା, ଜ୍ଞାନ, ଅହିଂସା, ନମ୍ରତା ଓ ଭଦ୍ର ବ୍ୟବହାର ଭଳି ଗୁଣର ଅଧିକାରୀହିଁ ବିଦ୍ୱାନ୍, ଖାଲି ପାଠ ପଢ଼ିଥିବା ଲୋକ ବିଦ୍ୱାନ୍ ନୁହେଁ ।

---

ବର୍ଷ : ୧୯ ଏପ୍ରିଲ୍ ୧୯୮୨ ଅଙ୍କ : ୧୦

ପ୍ରତି ସଂଖ୍ୟା : ଟ. ୨-୫୦ :: ବାର୍ଷିକ ମୂଲ୍ୟ : ଟ. ୩୦-୦୦



"ଯ୍ୟାକ୍ସ ବନେଇବା ପିଲାଙ୍କ ଖେଳ
ବଗ୍ସୁରି କରିଲେ
ଲାଗେନା ବେଳ"– ଫେଭି ଫେରୀ



ଅଲେଡ଼ା ଜିନିଷ, କତୁରି ଆଣ
ଖଣ୍ଡ ଖଣ୍ଡ କାଟ ଇଚ୍ଛା ପ୍ରମାଣ ।

ଫେଭିକଲ ଲଗାଅ, କଟା ବସ୍ତୁ ସଜାଅ
ଇଚ୍ଛା ପ୍ରମାଣେ ରୂପ ଆକାରକୁ ଦିଅ ।

କଣ୍ଢେଇ, ହାତି, ଘୋଡ଼ା, ହରିଣ, ଠେକୁଆ
ଗଣ୍ଡା, ମୟୂର, ବଣି, ଶୁଆ, ଶାରି, ଚଟିଆ ।

ଅଲେଡ଼ା ଜିନିଷ, କନା ଚିରା-ଫଟା
କାଚ ହେଉକି କାଗଜ ଅବା କାଠ-ପଟା ।

ସବୁ କିଛି ଲଗି ପାରିବ
ସବୁ କିଛି ବନେଇ ହେବ ।

ଦାଗ ଲଗେନି, ଅଳିଆ ହୁଏନି
ସଫାସୁତୁରା କାମ ବୋଉ ବି ଚିଡ଼େନି ।

ତମ କାମ ଦେଖି, ସଭିଏଁ କହନ୍ତି ବାହାବା
ତମେ କିନ୍ତୁ କୁହ ଫେଭିକଲ ଏମ୍ ଆର୍ ବାହାବା !

ଜାପାନୀ ଫୁଲ 'କ୍ରୀସାନ୍ଥେମମ୍' କେମିତି ବନେଇବ,
ସେ ସମ୍ପର୍କୀୟ ମାଗଣା ନିର୍ଦ୍ଦେଶାବଳୀ ପାଇବାକୁ ଏହି କୁପନଟି
ଭରି ଡାକରେ ପଠାଅ କିମ୍ବା ଲେଖ : 'ଫେଭି ଫେରୀ'',
ପୋଷ୍ଟ ବାକ୍ସ ୧୧୦୮୪, ବମ୍ବେ ୪୦୦ ୦୨୦ ।

ଜାପାନୀ ଫୁଲ 'କ୍ରୀସାନ୍ଥେମମ୍' କେମିତି ବନେଇବ,
ସେ ସମ୍ପର୍କୀୟ ମାଗଣା ନିର୍ଦ୍ଦେଶାବଳୀ ପାଇବାକୁ ଏହି କୁପନଟି
ଭରି ଡାକରେ ପଠାଅ କିମ୍ବା ଲେଖ : 'ଫେଭି ଫେରୀ'',
ପୋଷ୍ଟ ବାକ୍ସ ୧୧୦୮୪, ବମ୍ବେ ୪୦୦ ୦୨୦ ।

ନାମ : __________

ବୟସ : __________

ଠିକଣା : __________

__________

ସହର : __________

ରାଜ୍ୟ : ________ ପିନ୍‌କୋଡ୍ : ________

[illegible] 'ଫେଭିକ୍ରାଫ୍ଟ' [illegible] ? ହଁ/ନାହିଁ (Ch)



ଫେଭିକଲ୍ ଏମ୍ ଆର୍
ସିନ୍ଥେଟିକ ଅଢେସିଭ




ଉତ୍ତମ କାମ, ଉତ୍ତମ ନାମ, ଫେଭିକଲ୍'ର ଇଏ ପରିଣାମ ।

[illegible]

OBM-7070

## ଜହ୍ନମାମୁଁ ସମ୍ବାଦ-ଝରକା



### ଦୂରତମ ନକ୍ଷତ୍ର ମଣ୍ଡଳ

ଆମେରିକାର ଆକାଶତତ୍ତ୍ୱବିଦମାନେ ପୃଥିବୀଠୁଁ ପ୍ରାୟ ସାଢ଼େ ଚଉଦ ଲକ୍ଷ କୋଟି ଆଲୋକବର୍ଷ ଦୂରରେ ଅବସ୍ଥିତ ଗୋଟିଏ ନକ୍ଷତ୍ର ମଣ୍ଡଳର ସନ୍ଧାନ ପାଇଛନ୍ତି । ବାର୍କଲେ ବିଶ୍ୱବିଦ୍ୟାଳୟର ଅଧ୍ୟାପକ ହେରନ୍ ସ୍ପିନ୍ରାଡ୍‌ଙ୍କ ମତରେ ଏହାହିଁ ପୃଥିବୀଠୁଁ ଦୂରତମ ନକ୍ଷତ୍ର ମଣ୍ଡଳ ।

### ଦୟାଶୀଳ ହାତୀ

ଆନ୍ଧ୍ର ପ୍ରଦେଶର ଚିତ୍ତୋର ଜିଲ୍ଲାରେ ଜଣେ କୃଷକ କ୍ଷେତ ଭିତରକୁ ମଇଁଷୀ ପଶି ଆସିଛି ଭାବି ତାହା ଉପରେ ଲାଠି ପାହାର ବସେଇ ଦେଲା, ସିଏ ହାତୀ । ରାଗିଯାଇ ହାତୀ ଲୋକଟିକୁ ଶୁଣ୍ଢରେ ଉଠାଇ ନେଲା । କିନ୍ତୁ କଚାଡ଼ି ଦେବା ପୂର୍ବରୁ ଲୋକଟି "ହାତୀ ! ମୋତେ କ୍ଷମାକର !" ବୋଲି କହିବାରୁ ହାତୀ ଧୀରେ ଧୀରେ ତାକୁ ତଳେ ଠିଆ କରାଇଦେଇ ଚାଲିଗଲା ।



### ସଙ୍ଗୀତ ବାଦନରେ ନୂତନ ରେକର୍ଡ



ଶ୍ରୀରଙ୍ଗମ୍ ମନ୍ଦିର ପ୍ରାଙ୍ଗଣରେ ମୁରଲୀଧରନ୍ ନାମକ ବେହେଲା ବାଦକ ଏକାଦିକ୍ରମେ ଚଉଦ ଘଣ୍ଟା ବେହେଲା ବଜାଇ ରେକର୍ଡ ସୃଷ୍ଟି କରିଛନ୍ତି । ତାଙ୍କ ସହ ମୃଦଙ୍ଗ ସଙ୍ଗତ କରିଥିଲେ ରାଜାରମନ୍ ।

## ଜାଣନ୍ତି କି ?

୧. ବର୍ତ୍ତମାନ ବିଦ୍ୟମାନ ଶ୍ରୀଜଗନ୍ନାଥ ମନ୍ଦିରର ନିର୍ମାତା କିଏ ?

୨. ୧୮୬୬-୬୭ ରେ ଓଡ଼ିଶା ରାଜ୍ୟରେ କେଉଁ ଦୁର୍ଯୋଗ ଦେଖା ଦେଇଥିଲା ?

୩. ଜାହାଜରେ ଏକାଥରକେ ବିଶ୍ୱ ପରିକ୍ରମା କରିଥିବା ପ୍ରଥମ ଇଂରେଜ ନାବିକ କିଏ ?

୪. ନ୍ୟୁଜିଲାଣ୍ଡ୍‌ର ସ୍ଥିତି କଥା ପ୍ରଥମେ ଜଗତକୁ କିଏ ଜଣାଇଥିଲେ ?

୫. ଲିଭିଂଷ୍ଟୋନ୍ ଆଫ୍ରିକାର କେଉଁ ଜଳପ୍ରପାତ ଆବିଷ୍କାର କରିଥିଲେ ?

(୬୫ ପୃଷ୍ଠାରେ ଉତ୍ତର ଦେଖନ୍ତୁ)

# ଅନସୂୟା

ଗୋଟିଏ ପାର୍ବତ୍ୟଶିଳାର ଗୁମ୍ଫାରେ କୁଡ଼ିଆ ବନାଇ ବାସ କରୁଥିଲେ ଋଷି ଅତ୍ରି ଏବଂ ତାଙ୍କ ପତ୍ନୀ ଅନସୂୟା । ଅନସୂୟା ଦେଖିବାକୁ ଏଡ଼େ ସୁନ୍ଦର ଥିଲେ ଯେ ପଶୁ-ପକ୍ଷୀମାନେ ବି ତାଙ୍କୁ ଅନବରତ ଚାହିଁ ରହୁଥିଲେ । ତାଙ୍କର ସେ ଅତୁଳନୀୟ ସୌନ୍ଦର୍ଯ୍ୟ କେବଳ ଦୈହିକ ନଥିଲା, ଥିଲା ତାଙ୍କ ବିମଳ ଚରିତ୍ରର ପରିଚୟ । ସେ ଥିଲେ ମାତୃ-ହୃଦୟା । ଚରାଚର ବିଶ୍ୱର ସମସ୍ତଙ୍କୁ ସେ ନିଜର ଶିଶୁ ଭଳି ଦେଖୁଥିଲେ ।

ଥରେ ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱରଙ୍କୁ କେତେଜଣ ଋଷି ପ୍ରଶ୍ନ କଲେ, "ଅନସୂୟା କ'ଣ ସତରେ ସମସ୍ତଙ୍କୁ କେବଳ ଜନନୀର ଦୃଷ୍ଟିରେ ଦେଖି ପାରନ୍ତି ?"

ତିନି ଦେବ ଜାଣିଥିଲେ, ସେ ପାରନ୍ତି । କିନ୍ତୁ ଋଷିମାନଙ୍କ ସନ୍ତୋଷ ସକାଶେ କହିଲେ, "ଦେଖାଯାଉ ।" ତିନିହେଁ ସାଧାରଣ ଯୁବକ ଛଦ୍ମବେଶରେ ଯାଇ ଅନସୂୟାଙ୍କ ପାଖରେ ପହଞ୍ଚି କହିଲେ, "ଆମେ ଟିକିଏ ବିଶ୍ରାମ ଚାହୁଁ — କିନ୍ତୁ ତମ କୋଳରେ !"

ସେତେବେଳେ ଅତିଥିମାନଙ୍କ ପରିଚର୍ଯ୍ୟା ଥିଲା ପରମ କର୍ତ୍ତବ୍ୟ । କିନ୍ତୁ ତା' ବୋଲି ଜଣେ ଯୁବତୀ ତିନିଜଣ ଯୁବକଙ୍କୁ କିପରି ନିଜ କୋଳରେ ଶୁଆଇବ ?

"ଆସ, ପିଲାଏଁ ଆସ !" କହିଲେ ଅନସୂୟା । ତତ୍‌କ୍ଷଣାତ୍ ତିନି ଦେବ ତିନୋଟି ଶିଶୁ ପାଲଟିଗଲେ । ଅନସୂୟା ସେମାନଙ୍କୁ କୋଳରେ ଧରି ସ୍ତନ୍ୟ ପାନ କରାଇଲେ ।

ଅନସୂୟାଙ୍କର ଏ ଅଦ୍ଭୁତ ଶକ୍ତିରେ ମୁଗ୍ଧ ହୋଇ ତିନି ଦେବ ତାଙ୍କୁ ବର ଯାଚିଲେ । ଅନସୂୟା ସେମାନଙ୍କୁ ସତରେ ନିଜର ସନ୍ତାନ ରୂପେ ପାଇବାକୁ ଚାହିଁଲେ । ତେଣୁ ବିଷ୍ଣୁଙ୍କ ବିଭୂତି ଦତ୍ତାତ୍ରେୟ ରୂପେ, ବ୍ରହ୍ମାଙ୍କ ବିଭୂତି ସୋମ ରୂପେ ଏବଂ ଶିବଙ୍କ ବିଭୂତି ଦୁର୍ବାସା ରୂପେ ତାଙ୍କଠୁଁ ଜନ୍ମ ନେଲେ ।





# ପ୍ରକୃତ ରୂପ

ଅନେକ ଦିନ ତଳର କଥା । ଚତୁରଙ୍ଗପୁରର ତରୁଣ ରାଜା ଚନ୍ଦ୍ରଦେବ ଥରେ ଅତର୍କିତ ଭାବରେ ଶତ୍ରୁ ରାଜାଙ୍କ ଆକ୍ରମଣର ଶିକାର ହେଲେ । ସେ ପ୍ରାଣ ଧରି ବଣ ଭିତରକୁ ପଳାଇଗଲେ । ଶତ୍ରୁପକ୍ଷ ଅବଶ୍ୟ ତାଙ୍କ ରାଜ୍ୟ ଦଖଲ୍ କରିନେଲେ ।

ବଣ ଭିତରେ ତାଙ୍କୁ ଆଶ୍ରୟ ଦେଲେ ଜଣେ ତରୁଣ ତପସ୍ୱୀ । ତାଙ୍କ ନାମ ଶ୍ରଦ୍ଧାନନ୍ଦ । ରାଜା ଶ୍ରଦ୍ଧାନନ୍ଦଙ୍କ କୁଡ଼ିଆରେ ଆତ୍ମଗୋପନ କରି କିଛିଦିନ ରହିଲେ । ଶ୍ରଦ୍ଧାନନ୍ଦ ଥିଲେ ଅତ୍ୟନ୍ତ ବିଚକ୍ଷଣ ବ୍ୟକ୍ତି । ସେ କେତେଜଣ କାଠୁରିଆ ସାହାଯ୍ୟରେ ଗୋପନରେ ରାଜଭକ୍ତ ପ୍ରଜାମାନଙ୍କ ସହ ସମ୍ପର୍କ ସ୍ଥାପନ କଲେ । ସେ ପ୍ରଜାମାନେ କ୍ରମେ ଗୋଟିଏ ସୈନ୍ୟଦଳ ସଂଗଠନ କରି ହଠାତ୍ ଶତ୍ରୁ ରାଜାର ସୈନ୍ୟଦଳ ଉପରେ ଚଢ଼ାଉ କଲେ । ଶତ୍ରୁ ରାଜା ପ୍ରାଣ ହରାଇଲା । ରାଜ୍ୟର ନ୍ୟାୟସଙ୍ଗତ ରାଜା ଚନ୍ଦ୍ରଦେବ ନଅରକୁ ଫେରି ଆସି ପୁଣି ସିଂହାସନରେ ବସିଲେ ।

ନିଜ ସିଂହାସନ ପୁନରାଧିକାର କରିବା ପରେ ରାଜା ଚନ୍ଦ୍ରଦେବ ଅନ୍ୟ କିଛି କାମ କରିବା ପୂର୍ବରୁ ପ୍ରଥମେ ବଣ ଭିତରକୁ ଗଲେ । ସେ ସାଥିରେ ନେଇଥିଲେ ସୁନ୍ଦର କର୍ପୂରମାଳ ଓ ନାନା ଉପଢୌକନ । ସେସବୁ ସେ ଶ୍ରଦ୍ଧାନନ୍ଦଙ୍କୁ ଅର୍ପଣ କରି ବିନୀତ ଭାବରେ କହିଲେ, "ମୋତେ ଯେ ମୋ ଜୀବନର ଦାରୁଣ ଦୁର୍ଦ୍ଦଶା ବେଳେ ଆପଣ ଆଶ୍ରୟ ଦେଇ ମୋ ପ୍ରାଣରକ୍ଷା କଲେ, ସେତିକି ନୁହେଁ, ଅନେକ ସୁଚିନ୍ତିତ ପଦକ୍ଷେପ ନେଇ ମୋ ରାଜ୍ୟ ମଧ୍ୟ ଉଦ୍ଧାର କରି ଆପଣ ମୋତେ ଦେଲେ । ଆପଣଙ୍କୁ ଯେତେ

"ମିଛ ମାୟାରେ ପଡ଼ି ହେଲ୍..."



ପ୍ରକାରେ ଅଭିନନ୍ଦନ ଜଣାଇଲେ ମଧ୍ୟ ତାହା ଯଥେଷ୍ଟ ହେବ ନାହିଁ ।"

ରାଜାଙ୍କ ଅନୁରୋଧରେ ତାଙ୍କ ସହିତ ଶ୍ରଦ୍ଧାନନ୍ଦ ନଅରକୁ ଆସିଲେ । ରାଜା ନଅରରେ ଶ୍ରଦ୍ଧାନନ୍ଦଙ୍କ ସକାଶେ ଗୋଟିଏ ସୁନ୍ଦର ଅଟ୍ଟାଳିକା ଛାଡ଼ିଦେଲେ । ମାସଟିଏ ରହିବା ପରେ ଶ୍ରଦ୍ଧାନନ୍ଦ ଯେତେବେଳେ ବଣକୁ ଯିବାକୁ ବାହାରିଲେ, ରାଜା ତାଙ୍କୁ କହିଲେ, "ଆପଣଙ୍କର ଏଠାରେ କ'ଣ ଅସୁବିଧା ହେଉଛି ? ଆପଣଙ୍କୁ ପରାମର୍ଶଦାତା ରୂପେ ପାଇ ମୁଁ ନିଜକୁ ଭାଗ୍ୟବାନ ମଣୁଛି । ଆପଣ ରହିଥାନ୍ତୁ ।"

ରାଜାଙ୍କ ଅନୁରୋଧ ଏଡ଼ାଇ ନପାରି ଶ୍ରଦ୍ଧାନନ୍ଦ ରହିଗଲେ ।

ଶ୍ରଦ୍ଧାନନ୍ଦଙ୍କ ପ୍ରତି ରାଜାଙ୍କର ବିପୁଳ ଶ୍ରଦ୍ଧା ଦେଖି ପାଇଁ ମନ୍ତ୍ରୀ ସମସ୍ତେ ତାଙ୍କୁ ବହୁତ ସମ୍ମାନ ଦେଖାଉଥାନ୍ତି ଓ ଭୟ କରୁଥାନ୍ତି । ରାଜା ଶ୍ରଦ୍ଧାନନ୍ଦଙ୍କ ପାଇଁ ରେଶମର ମୂଲ୍ୟବାନ ଗୈରିକ ବସ୍ତ୍ର ଓ ହୀରା ହାର ଗଢ଼ାଇ ଦେଇଥାନ୍ତି । ଶ୍ରଦ୍ଧାନନ୍ଦଙ୍କ ଖଡ଼ମରେ ମୋତି ଲାଗିଥାଏ ।

ଶ୍ରଦ୍ଧାନନ୍ଦଙ୍କୁ ଖଟୁଥାନ୍ତି ଦଳେ ଦାସଦାସୀ । ଶ୍ରଦ୍ଧାନନ୍ଦଙ୍କ ସେବାରେ ସାମାନ୍ୟ ତ୍ରୁଟି ହୋଇଗଲେ ରାଜା ବିରକ୍ତ ହେବେ ବୋଲି ସମସ୍ତେ ଅତ୍ୟନ୍ତ ସତର୍କ ଭାବରେ କାମ କରୁଥାନ୍ତି । ନୈଶାହାର ବେଳେ ରାଜା ଶ୍ରଦ୍ଧାନନ୍ଦଙ୍କ ସହ ଖାଉଥାନ୍ତି । ତେଣୁ ରାତିରେ ରାଜା ନିରାମିଷ ଭୋଜନ କରୁଥାନ୍ତି । ଅବଶ୍ୟ କୋଡ଼ିଏ ପ୍ରକାର ତିଅଣ ହେଉଥାଏ ।

ବର୍ଷ ପରେ ବର୍ଷ ବିତିଗଲା । ଶ୍ରଦ୍ଧାନନ୍ଦଙ୍କ ଜନ୍ମ ଦିନରେ ରାଜା ପ୍ରତିଥର ତାଙ୍କୁ କିଛି ବିଶେଷ ମୂଲ୍ୟବାନ ଜିନିଷ ଭେଟି ଦେଉଥାନ୍ତି । ଥରେ ଜନ୍ମଦିନର କେଇମାସ ଆଗରୁ ରାଜା ପଚାରିଲେ, "ଏଥର ଆପଣଙ୍କ ଜନ୍ମଦିନରେ ମୁଁ କ'ଣ ଉପହାର ଦେଲେ ଠିକ୍ ହେବ ?"

ଶ୍ରଦ୍ଧାନନ୍ଦ କହିଲେ, "ରାଜା! ଆପଣଙ୍କର ଓ ମୋର ନିବିଡ଼ ସମ୍ପର୍କ କଥା ଆଜି ସମସ୍ତେ ଜାଣନ୍ତି । କିନ୍ତୁ ଭବିଷ୍ୟତରେ ଏହା କିଏ କାହିଁକି ମନେ ରଖିବ ? ମୋର ଗୋଟିଏ ପ୍ରତିମୂର୍ତ୍ତି ପ୍ରାସାଦ ସମ୍ମୁଖରେ ରଖିଲେ ଭଲ

ହୁଅନ୍ତା । ଚିରଦିନ ସମସ୍ତେ ତାକୁ ଦେଖନ୍ତେ ଓ ମୋତେ ମନେ ପକାନ୍ତେ !"

ରାଜା ହାତ ତାଳି ଦେଇ କହିଲେ, "ସାବାସ୍ ! ଭଲ ପ୍ରସ୍ତାବ । ପ୍ରାସାଦ ଆଗରେ ଖୋଲା ସ୍ଥାନର କେନ୍ଦ୍ର ସ୍ଥଳରେ ଆପଣଙ୍କ ମୂର୍ତ୍ତି ସ୍ଥାପନ ହେବ ।"

ରାଜା ଏହାପରେ ମନ୍ତ୍ରୀଙ୍କୁ ଡକାଇ ସବୁଠାରୁ ଭଲ ପ୍ରସ୍ତର ଶିଳ୍ପୀ କିଏ ତାହା ପଚାରିଲେ । ମନ୍ତ୍ରୀ କହିଲେ, "ପଡ଼ୋଶୀ ରାଜ୍ୟରେ ଜଣେ ପ୍ରସ୍ତର ଶିଳ୍ପୀ ଅଛନ୍ତି । ଲୋକେ ତାଙ୍କୁ ଆଗ୍ରୁଘାଁ ବୋଲି କହନ୍ତି । ସେ ସବୁଠାରୁ ଭଲ ପ୍ରସ୍ତର ଶିଳ୍ପୀ ।"

ଆଗ୍ରୁଘାଁ କିନ୍ତୁ ନିଜ ଗ୍ରାମ ଛାଡ଼ି କୁଆଡ଼େ ଯାଉ ନଥିଲେ । ତେଣୁ ଶ୍ରଦ୍ଧାନନ୍ଦଙ୍କର ଗୋଟିଏ ପୂର୍ଣ୍ଣାଙ୍ଗ ଅବିକଳ ଚିତ୍ରପଟ ତାଙ୍କ ପାଖକୁ ପଠାଇ ଦିଆଗଲା । ସେ ଗୁପ୍ତମାସ ଭିତରେ, ଜନ୍ମଦିନର ଠିକ୍ ପୂର୍ବଦିନ, ଆଗ୍ରୁଘାଁ ପ୍ରତିମୂର୍ତ୍ତି ପଠାଇ ଦେଲେ । ତାହା ଆବରଣ ଭିତରେ ଥାଏ । ତାକୁ ପ୍ରାସାଦ ସମ୍ମୁଖରେ ରଖାଗଲା । ଶ୍ରଦ୍ଧାନନ୍ଦଙ୍କ ଜନ୍ମଦିନର ପ୍ରଭାତରେ ରାଜା ଆସି ସବୁ ପାରିଷଦଙ୍କ ଆଗରେ ମୂର୍ତ୍ତିର ଆବରଣ ଖୋଲି ଦେଲେ ।

କିନ୍ତୁ ଇଏ କ'ଣ ? ଶ୍ରଦ୍ଧାନନ୍ଦଙ୍କୁ ଶିଳ୍ପୀ ଅତି ମାମୁଲି ପୋଷାକ ପିନ୍ଧାଇଛନ୍ତି; କଣ୍ଠରେ ହୀରା ହାର ବଦଳରେ ରୁଦ୍ରାକ୍ଷ । ମୁହଁରେ ତେଜ ନାହିଁ, ଅଛି ବୈରାଗ୍ୟ ଭାବ ।

"ଇଏ ଆମ ଶ୍ରଦ୍ଧାନନ୍ଦ ସ୍ୱାମୀଙ୍କ ମୂର୍ତ୍ତି ଭଳି ଦିଶୁନାହିଁ ।" ମନ୍ତ୍ରୀ କହିଲେ ।



"ବାସ୍ତବିକ, ଏ ଶିଳ୍ପୀ ଅତ୍ୟନ୍ତ ଗୋଟିଏ ଦାୟିତ୍ୱହୀନ । ସେ ଚଳପ୍ରତି ଠିକ୍ ଭାବରେ ଅନୁସରଣ କରି ନାହାନ୍ତି ।" ସେନାପତି କହିଲେ ।

"ଶିଳ୍ପୀଙ୍କୁ ତାଙ୍କ ବାକି ଦେୟ ଦିଅନାହିଁ !" ରାଜା ମନ୍ତ୍ରୀଙ୍କୁ ନିର୍ଦ୍ଦେଶ ଦେଲେ ।

ସମସ୍ତେ ନାନାଦି ମନ୍ତବ୍ୟ ଦେଉଥାନ୍ତି । କିନ୍ତୁ ନିର୍ବାକ ହୋଇ ରହିଥିଲେ ଶ୍ରଦ୍ଧାନନ୍ଦ ନିଜେ । ହଠାତ୍ ସେ ବୁଲିପଡ଼ି ନିଜ ଆବାସ ଭିତରେ ପଶିଗଲେ । କିଛି ସମୟ ପରେ ସେ ବାହାରି ଆସିବା ବେଳକୁ ଦେଖାଗଲା, ତାଙ୍କର ସେ ଉଜ୍ଜ୍ୱଳ ପୋଷାକ ଆଉ ନାହିଁ, ହୀରା ହାର ବଦଳରେ ପିନ୍ଧିଛନ୍ତି ରୁଦ୍ରାକ୍ଷ । ମୋତିଲଗା ଖଡ଼ମ ବି ନାହିଁ ।

ସେ ମୃଦୁ ହସି ମନ୍ତ୍ରୀଙ୍କୁ ପଚାରିଲେ, "ଆଚ୍ଛା, ଶିଳ୍ପୀଙ୍କ ପୂରା ନାମ କ'ଣ କହି ପାରିବେ ?"

"ହଁ, ଭାସ୍କର ବର୍ମା ।" ମନ୍ତ୍ରୀ କହିଲେ ।

"ଠିକ୍ । ମୁଁ ସେଇଆ ଭାବିଥିଲି । ଭାସ୍କର ଓ ମୁଁ ଏକଦା ଗୁରୁଙ୍କଠିଁ ଅଧ୍ୟୟନ କରୁଥିଲୁଁ । ମୁଁ ଶାସ୍ତ୍ର ପଢ଼ୁଥିଲି; ସେ ଶିଳ୍ପବିଦ୍ୟା ଶିଖୁଥିଲା । ସେ ଇଚ୍ଛାକରି ମୋର ମୂର୍ତ୍ତିକୁ ଏପରି ରୂପ ଦେଇଛି । ମୁଁ ମୋ ସନ୍ନ୍ୟାସ ଜୀବନ କଥା ଭୁଲି ଏଠାରେ ରାଜକୀୟ ରୀତିରେ ଜୀବନ-ଯାପନ କରି ଭୁଲ୍ କରୁଛି, ସେ ଏଇଆ ମୋତେ ଚେତାଇ ଦେବାକୁ ଚାହେଁ । ମୁଁ ଚାଲିଲି ।"

ଏହା କହି ଶ୍ରଦ୍ଧାନନ୍ଦ ରାଜାଙ୍କ ଆଡ଼କୁ ଅନାଇ କହିଲେ, "ରାଜା! ମୋର ଦୁଇଟି ଅନୁରୋଧ, ଏ ମୂର୍ତ୍ତିକୁ ପ୍ରାସାଦ ଭିତରେ କେଉଁଠି ଥୋଇ ଦିଅନ୍ତୁ । ସର୍ବସାଧାରଣଙ୍କ ଆଗରେ ରଖିବା ଲୋଡ଼ା ନାହିଁ । ଦ୍ୱିତୀୟରେ ଶିଳ୍ପୀର ଯେତିକି ପ୍ରାପ୍ୟ, ତାହାଠୁଁ କିଛି ଅଧିକ ତାକୁ ଦେବେ । ତା'ର ଘର ସଂସାର ଅଛି ।"

ଶ୍ରଦ୍ଧାନନ୍ଦ ଏହାପରେ ବଣ ଭିତରେ ଥିବା ନିଜ କୁଡ଼ିଆକୁ ଚାଲିଗଲେ ।





# ସୁନା ଓ ସୁଖ

ପୂର୍ବକାଳର କଥା । ସୁବର୍ଣ୍ଣରେଖା ନଦୀ ତଟବର୍ତ୍ତୀ ଗୋଟିଏ ଅରଣ୍ୟ ଭିତରେ କୁଡ଼ିଆ କରି ରହୁଥିଲେ ଜଣେ ସାଧୁ । ନାମ ରୁଦ୍ରାକ୍ଷାନନ୍ଦ ।

ସାଧୁଙ୍କ ପାଖରେ ତାଙ୍କର ତିନି ଚାରିଜଣ ମାତ୍ର ଚେଲା ରହୁଥିଲେ । କିନ୍ତୁ ଆଖପାଖର ଗାଁଗଣ୍ଡାମାନଙ୍କରେ ତାଙ୍କର ବହୁତ ଭକ୍ତ ଥିଲେ । ପ୍ରତି ପୂର୍ଣ୍ଣିମୀ ଓ ଅମାବାସ୍ୟା ମାନଙ୍କରେ ସେମାନେ ସାଧୁଙ୍କୁ ପ୍ରଣାମ କରିବାକୁ ଆସୁଥାନ୍ତି । ସାଧୁଙ୍କ ପ୍ରବଚନ ଶୁଣି ସେମାନେ ନିଜ ନିଜକୁ ଧନ୍ୟ ମନେ କରୁଥା'ନ୍ତି ।

ସାଧୁ ରୁଦ୍ରାକ୍ଷାନନ୍ଦ ନିଜ ପାଖରେ ରହୁଥିବା ଶିଷ୍ୟମାନଙ୍କୁ କଠିନ ଯୋଗ ଓ ଶୃଙ୍ଖଳା ଶିକ୍ଷା ଦେଉଥାନ୍ତି ।

ସଂସାରୀ ଜୀବନ ଯାପନ କରୁଥିବା ଭକ୍ତମାନଙ୍କୁ ସେ କିପରି ନୀତିବାନ୍, ସତ୍ୟ ପରାୟଣ ଓ ସରଳ ଭାବରେ ଜୀବନ ବିତାଇଲେ ଶାନ୍ତିରେ ରହିହେବ, ସେହି କଥା ବୁଝାଉଥାନ୍ତି ।

ଭକ୍ତମାନଙ୍କ ଭିତରେ ଥିଲେ ଜଣେ ଧନୀକ । ତାଙ୍କ ନାମଟି ସିନା ପ୍ରସନ୍ନ, କିନ୍ତୁ ସେ ସର୍ବଦା ଅପ୍ରସନ୍ନ ଦିଶୁଥାନ୍ତି । ସାଧୁ ଥରେ ଥରେ ତାଙ୍କୁ ପଚାରୁଥାନ୍ତି, "କହୋ, ତମେ ସବୁବେଳେ ତିନ୍ତୁଳି ଖାଉଥିଲା ଭଳି ମୁହଁ କରିଥାଅ କାହିଁକି ?"

"ବାବା ! ଜୀବନରେ କେଉଁ ଅମୃତ ଆମେ ଚାଖୁଛୁଁ ଯେ ମୁହଁରେ ଫୁଲ ଫୁଟିବ ? ଦୁନିଆରେ ସମସ୍ତେ ସ୍ୱାର୍ଥପର ଓ ପ୍ରବଞ୍ଚକ । ମୋ ଭଳି ଭଲ ମଣିଷମାନେ ପରିଶ୍ରମ କରି ଯେତିକି ଉପାର୍ଜନ କରିବେ, ଅନ୍ୟମାନେ ଠକାଠକି କରି ତାହାଠୁଁ ବେଶି ପାଇଯିବେ । ଏଥିରେ ସୁଖ ମିଳିବ କାହୁଁ ?" ପ୍ରସନ୍ନ ଉତ୍ତର ଦିଅନ୍ତି ।

ପ୍ରାଚୀନ କାହାଣୀ; ପୁନର୍ଲିଖନ : ମନୋଜ ଦାସ



"ପ୍ରସନ୍ନ ! ତମେ ଯାହା ଉପାର୍ଜନ କରୁଛ, ସେଥିରୁ ସୁଖ ପାଇବାକୁ ତମକୁ ବାଧା ଦେଉଛି କିଏ ? ଅନ୍ୟମାନେ କେତେ ଉପାର୍ଜନ କଲେ, କେଉଁ ଉପାୟରେ କଲେ, ସେଥିରେ ତୁମେ ମୁଣ୍ଡ ବୁଲଉଛ କାହିଁକି ? ସେମାନେ ସତ୍-ମାର୍ଗରେ ଉପାର୍ଜନ କଲେ ବି ତ ତମେ ତାଙ୍କ ଠାରୁ ସୁଖ ପାଆନ୍ତ ନାହିଁ ! ଦୁନିଆରେ କେତେ ଲୋକଙ୍କ ଉପାର୍ଜନ ତମଠୁଁ କମ୍, ସେ ହିସାବ କରିଛ ?" ସାଧୁ ପ୍ରସନ୍ନଙ୍କୁ ବୁଝାଇବାକୁ ଚେଷ୍ଟା କରନ୍ତି । କିନ୍ତୁ ଫଳ କିଛି ହୁଏ ନାହିଁ ।

କିଛିଦିନ ଅନ୍ତେ ସାଧୁ ଶଯ୍ୟାଶାୟୀ ହେଲେ । ତାଙ୍କର ଜଣେ ସ୍ୱଚ୍ଛଳ ଭକ୍ତ ତାଙ୍କୁ ନିଜ ଘରକୁ ଆଣି ଶୁଶ୍ରୂଷା କଲେ । କିନ୍ତୁ ସାଧୁ ଦିନେ ହଠାତ୍ ସବୁ ଶିଷ୍ୟ ଓ ଭକ୍ତଙ୍କୁ ଡକାଇ କହିଦେଲେ, "ମୁଁ ଏଥର ସଂସାର ଛାଡ଼ି ଚାଲିଲି । ତମେ-ମାନେ ଜଣ ଜଣ ହୋଇ ମୋ ପାଖକୁ ଆସ । ମୋ ଅନ୍ତିମ ମୁହୂର୍ତ୍ତ ପୂର୍ବରୁ ଯାହାର ଯାହା କହିବାର ଅଛି କହିଦେଇ ପାର ।"

ହଠାତ୍ ସାଧୁଙ୍କର ଏଭଳି ଘୋଷଣା ଶୁଣି ଶିଷ୍ୟବର୍ଗ ମର୍ମାହତ ହେଲେ । "ମହାଭାଗ ! ଆପଣ ଆମ ପ୍ରତି ଦୟାକରି ଆପଣଙ୍କ ସିଦ୍ଧାନ୍ତ ବଦଳାଇ ଦିଅନ୍ତୁ ।" ସେମାନେ ମିନତିଭରା କଣ୍ଠରେ କହିଲେ । କିନ୍ତୁ ସାଧୁ କହିଦେଲେ, "ମୋ ସିଦ୍ଧାନ୍ତ ବଦଳିବାର ନୁହେଁ ।" ଜଣ ଜଣ କରି ଆସି ସାଧୁଙ୍କୁ ପ୍ରଣାମ କରି ଗଲେ । ଅଧିକାଂଶ କାନ୍ଦୁଥାନ୍ତି । ସାଧୁଙ୍କ ଆଶୀର୍ବାଦ ଛଡ଼ା କାହାରି ଆଉ କିଛି କାମ୍ୟ ନଥିଲା ।

ଧନୀକ ପ୍ରସନ୍ନଙ୍କ ପାଳି ପଡ଼ିଲା । ସେ ଆସି କହିଲେ, "ବାବା ! ମୋର ଗୋଟିଏ ମାଗୁଣି ଅଛି । ଆପଣ ପୂରଣ କରିବେ ବୋଲି ପ୍ରଥମେ କଥା ଦିଅନ୍ତୁ ।"

ସାଧୁ ପ୍ରସନ୍ନଙ୍କୁ ବିଦା କରିବା ନିମନ୍ତେ ବ୍ୟଗ୍ର ଥିଲେ । ସେ ସମ୍ମତିସୂଚକ ଭାବରେ ମୁଣ୍ଡ ହଲାଇ ଦେଲେ ।

ଆକାଂକ୍ଷା ଓ ଆଶଙ୍କାରେ ଅଧୀର ହୋଇ ଧନୀକ କହିଲେ, "ବାବା, ଦୟାକରି ମୋତେ ଲୁହାକୁ ସୁନା କରିବାର ମନ୍ତ୍ରଟି କହି ଦିଅନ୍ତୁ । ସେ ମନ୍ତ୍ର ଆପଣଙ୍କୁ ଜଣା ଅଛି ବୋଲି ଆପଣଙ୍କର ଜଣେ ଚେଲାଠୁଁ ଶୁଣିଛି !"

ସାଧୁଙ୍କ ମୁହଁରେ ତରଳ ହସ ଫୁଟି ଉଠିଲା। ସେ କ୍ଷୀଣ କଣ୍ଠରେ କହିଲେ, "ବାବୁ ! ମୁଁ ଭାବିଥିଲି ସତରେ ତମର କୌଣସି ମୂଲ୍ୟବାନ୍ ଇଚ୍ଛା ଅଛି, ଯେଉଁ ଇଚ୍ଛାର ଉତ୍ତର ପାଇଲେ କି ତମେ ସୁଖୀ ହେବ।"

ଉତ୍କଣ୍ଠିତ କଣ୍ଠରେ ଧନୀକ କହିଲେ, "ଆଜ୍ଞା, ସୁନାଠୁଁ ମୂଲ୍ୟବାନ ଆଉ କେତେ ଜିନିଷ ବା ଅଛି ? ସୁନାହିଁ ତ ସୁଖର ଉପାୟ ! ଯେତେ ବେଶି ସୁନା, ସେତେ ବେଶି ସୁଖ !"

ସାଧୁ ଗମ୍ଭୀର ଭାବରେ କହିଲେ, "ହେଉ, ଶୁଣ।" ଏହାପରେ ସେ ମନ୍ତ୍ରଟି କହିଦେଲେ। ସରଳ ମନ୍ତ୍ର। ଲୁହା ଟେକା ବା ଲୁହା ଗଦା ଉପରେ ହାତ ରଖି ତିନିଥର ଉଚ୍ଚାରଣ କଲେ ସେସବୁ ସୁନା ପାଲଟି ଯିବ।

ଧନୀକଙ୍କୁ ସେଦିନ ହସ ହସ ବଦନରେ ବାହାରି ଆସିବାର ଦେଖି ଅନ୍ୟମାନେ ପରସ୍ପର କହୁଥିଲେ, "ପ୍ରସନ୍ନବାବୁ କିଛି ବିଶେଷ ଆଧ୍ୟାତ୍ମିକ ଆଲୋକ ପାଇଯାଇଛନ୍ତି !"

ସେହିଦିନ ନିଶାର୍ଦ୍ଧରେ ସାଧୁ ରୁଦ୍ରାକ୍ଷାନନ୍ଦ ଦେହତ୍ୟାଗ କଲେ। ସମସ୍ତେ କାନ୍ଦିଲେ। କିନ୍ତୁ ପ୍ରସନ୍ନଙ୍କ ମୁହଁ ଅତି ପ୍ରସନ୍ନ ଦିଶୁଥାଏ। ସାଧୁଙ୍କଠାରୁ ସେ ଯେ ଦିବ୍ୟଜ୍ଞାନ ହାସଲ କରି ନେଇଛନ୍ତି, ସେଥିରେ ଆଉ କାହାରି ସନ୍ଦେହ ରହିଲା ନାହିଁ।

ଧନୀକ ଘରକୁ ଫେରି ପ୍ରଥମେ ପ୍ରଚୁର ଟଙ୍କା ଖର୍ଚ୍ଚ କରି ଗୋଟିଏ ଦୃଢ଼ କୋଠାଘର ବନାଇଲେ। ସେଥିରେ ଝରକା କବାଟ ବେଶି ନଥାଏ। ତା' ଚାରିକଡ଼ରେ ଉଚ୍ଚ ପ୍ରାଚୀର



ନିର୍ମାଣ କରାଗଲା । ପ୍ରାଚୀର ଉପରେଯାକ ଛାତ୍ ଲୁହାକଣ୍ଟା ପୋତା ହୋଇଥାଏ । ଏଭଳି କୋଠା ଯେ ଧନୀକ କାହିଁକି ନିର୍ମାଣ କରୁଛନ୍ତି, ସେକଥା କେହି ବୁଝିପାରୁ ନଥାନ୍ତି ।

କୋଠା ନିର୍ମାଣ ପରେ ସେ ଲୁହା ଦାମ ମୂଲେଇବାକୁ ଲାଗିଲେ । ସେ ବାରମ୍ବାର ପୁରୁଣା ରଦ୍ଦି ଲୁହାରେ କାରବାର କରୁଥିବା ବେପାରୀଙ୍କୁ ଭେଟନ୍ତି । ସେମାନେ ଯେତେ ଦାମ ନେଲେ ବି ତାଙ୍କୁ ବିଶେଷ ଫରକ୍ ପଡ଼ନ୍ତା ନାହିଁ; କାରଣ ଲୁହାତକ ଯେତେବେଳେ ସୁନା ହୋଇଯିବ! କିନ୍ତୁ କାହିଁକି ଲୁହା ବେପାରୀ ବାପୁଡ଼ା ଦୁଇ ପଇସା ଅଧିକ ପାଇଯିବ ? "ଏଗୁଡ଼ାକ ବଡ଼ ଲୋଭୀ!" ମନେ ମନେ ବାରମ୍ବାର ଏହା କହି ସେ ଲୁହା ଦାମ କମ୍ ହେବାଯାଏ ଅପେକ୍ଷା କରୁଥାନ୍ତି ।

ତିନିବର୍ଷ ପରେ ହଠାତ୍ ରଦ୍ଦି ଲୁହାର ଦାମ ବଜାରରେ ବହୁତ କମିଗଲା । ସେ ଗାଡ଼ି ଗାଡି ଲୁହା କିଣି ନୂଆ କୋଠା ଭିତରେ ଜମା କଲେ । ତା'ପରେ ଦିନେ ସନ୍ଧ୍ୟା-ବେଳେ କବାଟ ଦରଜା ବନ୍ଦ କରି ମନ୍ତ୍ର ପଢ଼ିବାକୁ ବସିଲେ ।

କିନ୍ତୁ ହାୟ! ମନ୍ତ୍ରଟି ସେତେବେଳକୁ ଆଉ ମନେ ନଥିଲା! ରଦ୍ଦି ଲୁହା ଦାମ ମହଣ ପିଛା ଦୁଇ ପଇସା କମିବାକୁ ଅପେକ୍ଷା କରିବା ଭିତରେ ମନ୍ତ୍ରଟି ସେ ଭୁଲି ଯାଇଥିଲେ । ଯେତେ ମୁଣ୍ଡ କଚାଡ଼ିଲେ ବି କିଛି ଫଳ ହେଲାନାହିଁ!

କେଇଦିନ ପରେ ପାଖ ପଡ଼ୋଶୀମାନେ ରଦ୍ଦି ଲୁହା ଗଦାକୁ ଜାବୁଡ଼ି ଧରି ଧନୀକ ଏଣୁତେଣୁ ଅବୋଧ କିଛି କହୁଥିବାର ଶୁଣିଲେ । ସେ ବିଚିତ୍ର ଶବ୍ଦମାନ ଉଚ୍ଚାରଣ କରୁଥିଲେ । କାଳେ ତାହା ମଂତ୍ର ସହ ମିଶିଯିବ! ପରେ ପରେ ସେ ଚିତ୍କାର କରିବାର ଶୁଣାଗଲା । ସମସ୍ତେ ବୁଝିଲେ, ସେ ପାଗଳ ହୋଇ ଗଲେଣି ।

କ୍ରମେ ଲୋକେ ତାଙ୍କ ଚିତ୍କାରକୁ ଅଭ୍ୟସ୍ତ ହୋଇଗଲେ!






[୧୭]

[ଧୂସର ଦୁର୍ଗ ଆବିଷ୍କାର କରିବା ନିମନ୍ତେ ରୁଦ୍ରପୁରର ରାଜା ଶିବସିଂହ ଚନ୍ଦ୍ରବର୍ମାଙ୍କୁ ଦାୟିତ୍ୱ ଦେଲେ । ଚନ୍ଦ୍ରବର୍ମା ଚାରିଜଣ ଅମାତ୍ୟ, କିଛି ସୈନିକ ଏବଂ ଦେବଲଙ୍କୁ ସାଥିରେ ଧରି ଅଗ୍ରସର ହେଲେ । ପଶ୍ଚିମ ଦିଗକୁ ଅନେକ ଦୂର ଅଗ୍ରସର ହେବା ପରେ ସେମାନେ ଗୋଟିଏ ପରିତ୍ୟକ୍ତ ଦୁର୍ଗ ଦେଖିଲେ । ଶିଳାଲେଖରୁ ଜଣାଗଲା, ତାହାର ନାମ କରବୀରପୁର । ସେ ଶିଳାଲେଖରେ ଧୂସର ଦୁର୍ଗର ଉଲ୍ଲେଖ ଥିଲା । ତା'ପରେ···]

କରବୀରପୁରଠାରେ ସେ ପରିତ୍ୟକ୍ତ ଦୁର୍ଗକୁ ପଛରେ ପକାଇ ସେମାନେ ଆହୁରି ପଶ୍ଚିମକୁ ଚାଲିଲେ । କିଛି ଦୂର ଯିବା ପରେ ଗୋଟିଏ ନୂଆ ପର୍ବତମାଳା ସେମାନଙ୍କ ଆଖିରେ ପଡ଼ିଲା । ସେ ପର୍ବତମାଳା ପାରିହେବା ସହଜ ନଥିଲା । ପର୍ବତ ଚଢ଼ିବା ନିମନ୍ତେ କୌଣସି ସ୍ଥାନରେ ସୁଗମ ମାର୍ଗ ନଥିଲା । ଖାଦ୍ୟଦ୍ରବ୍ୟ ବହନ କରୁଥିବା ଗଧମାନଙ୍କୁ ଧରି ତାହା ଆରୋହଣ କରିବା ଅସମ୍ଭବ ମନେ ହେଲା ।

ଚନ୍ଦ୍ରବର୍ମା କିଛି ସମୟ ପର୍ଯ୍ୟନ୍ତ ନୀରବରେ ଚିନ୍ତା କରି ନିଜ ଲୋକଙ୍କୁ କହିଲେ, "ଗଧମାନଙ୍କୁ ଧରି ଏ ପର୍ବତମାଳା ଅତିକ୍ରମ କରିବା ଅସମ୍ଭବ । ତେଣୁ ଯେତିକି ଖାଦ୍ୟଦ୍ରବ୍ୟ ଆମ ନିଜ ନିଜ ପିଠିରେ ଧରି ପର୍ବତ ଆରୋହଣ




କରି ପାରିବା, ସେତିକି ଖାଦ୍ୟଦ୍ରବ୍ୟ ନେବା। ଗଧମାନଙ୍କୁ ଏଇଠାରେ ଛାଡ଼ି ଯିବାକୁ ହେବ।"

ଚନ୍ଦ୍ରବର୍ମାଙ୍କ କଥା ଶୁଣି ତାଙ୍କ ଅନୁଚରମାନେ ଉତ୍ସାହ ଦେଖାଇଲେ ନାହିଁ। ଜଣେ କହିଲା, "ଆଜ୍ଞା, ପର୍ବତ ସେପାଖରେ କ'ଣ ଅଛି, ସେକଥା ଜଣା ନାହିଁ। ଖାଲିଟାରେ ପର୍ବତ ଆରୋହଣ କରି ଲାଭ କ'ଣ? ଆମେ ସାଥିରେ ବା କେତେ ଖାଦ୍ୟ ନେଇ ପାରିବା? ସେତକ ସରିଗଲେ କ'ଣ ହେବ?"

ଆଉ ଜଣେ କହିଲା, "ଠିକ୍ କଥା। ତା' ଛଡ଼ା ଗଧମାନଙ୍କୁ ଅଧାଅଧି ଖାଦ୍ୟ ପଦାର୍ଥ ସହ ଏଠାରେ ଛାଡ଼ିଦେଇ ଯିବା ନିରାପଦ ନୁହେଁ।"

"ଶୁଣ। ଆମକୁ ପାହାଡ଼ ଚଢ଼ିବାକୁ ହେବ। ନହେଲେ ଆମ ଅଭିଯାନ ବିଫଳ ହେବ। ଗଧମାନଙ୍କୁ ଧରି ଦଉଡ଼ି ସାହାଯ୍ୟରେ ପାହାଡ଼ ଚଢ଼ିବା ସମ୍ଭବପର କି? ନା। ଅତଏବ ସେମାନଙ୍କୁ ଏଠି ଛାଡ଼ି ଯିବା ଛଡ଼ା ଉପାୟ କ'ଣ?" ଚନ୍ଦ୍ରବର୍ମା ସ୍ପଷ୍ଟ କରିଦେଲେ।

ଏହାପରେ ଆଉ କାହାରି କିଛି କହିବାର ରହିଲା ନାହିଁ। ସମସ୍ତେ ଗଧଙ୍କ ଉପରୁ ଖାଦ୍ୟ ବୋଝ ତଳକୁ ଆଣି ଯିଏ ଯେତେ ପାରିଲେ ବନ୍ଧାବନ୍ଧି କରି ନିଜ ନିଜ ପିଠିରେ ବାନ୍ଧିଲେ।

ପାହାଡ଼ ଚଢ଼ିବା ସହଜ ନଥିଲା। ତେବେ ସମସ୍ତେ ବଳବାନ ଓ କୁଶଳୀ ଥିଲେ। ଅଧାଅଧି ଚଢ଼ିବା ପରେ ସେମାନେ ଗୋଟିଏ ସମତଳ ସ୍ଥାନରେ ସନ୍ଧାନ ପାଇଲେ। ସେଠାରେ ମଧ୍ୟାହ୍ନ ଭୋଜନ କରି, କିଛି ସମୟ ବିଶ୍ରାମ ପରେ ପୁଣି ସେମାନେ ଯାତ୍ରାରମ୍ଭ କଲେ। ସୂର୍ଯ୍ୟାସ୍ତ ପୂର୍ବରୁ ସମସ୍ତେ ପର୍ବତ ଶୀଖରରେ ପହଞ୍ଚିଗଲେ। ପ୍ରଥମେ ପହଞ୍ଚିଲେ ଚନ୍ଦ୍ରବର୍ମା ଓ ଦେବଳ। ବିପରୀତ ଦିଗକୁ ଅନାଇ ସେମାନେ ଯେଉଁ ଦୃଶ୍ୟ ଦେଖିଲେ, ସେଥିରେ ସେମାନଙ୍କର ଆନନ୍ଦ ଓ ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ।

ସେମାନେ ଦେଖିଲେ ଗୋଟିଏ ସୁନ୍ଦର ନଗରୀ। ଅସ୍ତଗାମୀ ସୂର୍ଯ୍ୟଙ୍କ କିରଣ ଯୋଗୁଁ ସେ ନଗରୀର ଅଟ୍ଟାଳିକାମାନ ଝଟକୁ ଥିଲେ। ସେସବୁ ଅଟ୍ଟାଳିକାକୁ ଘେରି ରହିଥିଲେ ଉଦ୍ୟାନ ଓ ଫଳ ବଗିଚା।




ଏ ନଗରୀର ଅଧିପତି କିଏ ? ଏହାର ନାମ କ'ଣ ? ଚନ୍ଦ୍ରବର୍ମାଙ୍କ ମନରେ ଏହି ସବୁ ପ୍ରଶ୍ନର ସଞ୍ଚାର ହେବା ବେଳକୁ ସୈନିକମାନଙ୍କ ସର୍ଦ୍ଦାର ତାଙ୍କ ପାଖକୁ ଆସି କହିଲା, "ବାବୁ! ଏ ନଗରୀ ତ ଶିବପୁର ।"

"ଏହା ଶିବପୁର ବୋଲି ତମେ ନିଶ୍ଚିତ ? ତମେ ଏଠାକୁ ଆଗରୁ ଆସିଛ କି ?" ଚନ୍ଦ୍ରବର୍ମା ଆଗ୍ରହରେ ପଚାରିଲେ ।

"ହଁ ଆଜ୍ଞା, ମୁଁ ଏଠାକୁ ପୂର୍ବରୁ ଆସିଛି । ସେତିକି ନୁହେଁ, ଏଠାରେ ଥରେ ମାସଟିଏ ଥିଲି । ଏହା ରୁଦ୍ରପୁର ରାଜ୍ୟର ପଶ୍ଚିମ ସୀମାରେ ଅବସ୍ଥିତ । ଏହା ସେପଟେ ମରୁଭୂମି । ଏ ନଗରୀର ରାଜପ୍ରତିନିଧି ବୀରମଲ୍ଲଙ୍କୁ ମୁଁ ଜାଣେ ।" ସୈନିକ ସର୍ଦ୍ଦାର କହିଲା ।

ଚନ୍ଦ୍ରବର୍ମା ଆଶ୍ଚର୍ଯ୍ୟ ଓ ବିରକ୍ତ ହୋଇ ପଚାରିଲେ, "ତମେ ଯଦି ଏଠାକୁ ଆଗରୁ ଆସିଛ, ତେବେ ନିଶ୍ଚୟ ଏଠାକୁ ଆସିବାର ରାସ୍ତା ତୁମକୁ ଜଣା ଅଛି । ତମେ ସେକଥା ଆଗରୁ କହିଲ ନାହିଁ କାହିଁକି ?"

ସର୍ଦ୍ଦାର ଏ ପ୍ରଶ୍ନ ପାଇଁ ପ୍ରସ୍ତୁତ ନଥିଲା । ସେ ଚମକି ଉଠି କହିଲା, "କଥା କ'ଣ କି, ମୁଁ ଅନ୍ୟ ବାଟେ ଥିବା କଥା ଭୁଲି ଯାଇଥିଲି । ତା'ଛଡ଼ା ଆମର ଗନ୍ତବ୍ୟ ସ୍ଥଳ ଯେ ଶିବପୁର, ସେକଥା ମୁଁ ଜାଣି ନଥିଲି ।"

ସେମାନେ କଥାବାର୍ତ୍ତା କରୁଛନ୍ତି, ସେତିକି-ବେଳେ ଭେରୀ ଶବ୍ଦ ଶୁଭିଲା । ସେ ଶବ୍ଦର ଉତ୍ପତ୍ତିସ୍ଥଳ ସେମାନଙ୍କଠୁଁ ବିଶେଷ ଦୂର ନୁହେଁ ବୋଲି ସେମାନେ ବୁଝି ପାରୁଥିଲେ ।

ସେ ଭେରୀ ଶବ୍ଦର ଉତ୍ତର ହିସାବରେ ନଗରୀ ଭିତରୁ ଡଙ୍କା ବାଜିଲା । ଅଳ୍ପ ସମୟ ଭିତରେ ପାହାଡ଼ ତଳେ ଆସି ପହଞ୍ଚିଗଲେ କେତେଜଣ ଧନୁର୍ଦ୍ଧାରୀ ସୈନିକ । ସେମାନେ ପାହାଡ଼ ଚଢ଼ିବାକୁ ଆରମ୍ଭ କଲେ ।

ଚନ୍ଦ୍ରବର୍ମା ବୁଝି ପାରିଲେ, ଏମାନେ ନଗର ରକ୍ଷୀ । ଚନ୍ଦ୍ରବର୍ମା ଓ ତାଙ୍କ ଦଳକୁ ଦେଖି ବିପଦର ଆଶଙ୍କା କରି ଆସି ପହଞ୍ଚି ଯାଇଛନ୍ତି । ଆଗନ୍ତୁକମାନେ ଯେ ଶତ୍ରୁ ନୁହନ୍ତି ମିତ୍ର, ଏ ସଙ୍କେତ ସଙ୍ଗେ ସଙ୍ଗେ ଦେଇଦେବା ଉଚିତ । ଏହା ସ୍ଥିର କରି ଚନ୍ଦ୍ରବର୍ମା ନିଜ

ତରବାରି ମୁନରେ ଖଣ୍ଡିଏ ଧଳା କନା ବାନ୍ଧି ହଲାଇଲେ । ପର୍ବତ ଆରୋହଣ କରୁଥିବା ରକ୍ଷୀଦଳ ତାହା ଲକ୍ଷ୍ୟ କରି ରହିଗଲେ । ସେମାନଙ୍କ ନେତା ଧନୁରେ ତୀର ଯୋଖି ମାରିଲେ । ତେବେ ସେ ତୀର ଯେ ଆକ୍ରମଣ ପାଇଁ ଉଦ୍ଦିଷ୍ଟ ନୁହେଁ, ସେକଥା ବୁଝି ହେଉଥିଲା ।

ତୀରଟି ସାଇଁ ସାଇଁ ଶବ୍ଦ କରି ଆସି ଶିଖର ପାଖରେ ପଡ଼ିଲା । ସେଥିରେ ଖଣ୍ଡିଏ କାଗଜ ଯୋଖା ହୋଇଥିଲା ।

ଚନ୍ଦ୍ରବର୍ମା ତରତରରେ କାଗଜଟି ଖୋଲି ପଢ଼ିଲେ । ସେଥିରେ ଶିବପୁର ଦୁର୍ଗର ପ୍ରଧାନ ରକ୍ଷକଙ୍କ ଦସ୍ତଖତ ଥିଲା ।

ଚିଠିରେ ପ୍ରଶ୍ନ କରା ହୋଇଥିଲା, "ତମେ-ମାନେ କିଏ ? ଆସିବାର ଉଦ୍ଦେଶ୍ୟ କ'ଣ ? ଏ ପ୍ରଶ୍ନର ସନ୍ତୋଷଜନକ ଉତ୍ତର ସଙ୍ଗେ ସଙ୍ଗେ ମିଳିବା ଆବଶ୍ୟକ । ନହେଲେ ତୁମ-ମାନଙ୍କୁ ଶତ୍ରୁ ବୋଲି ଧରି ନିଆଯିବ ।"

ଚନ୍ଦ୍ରବର୍ମା ରୁଦ୍ରପୁର ରାଜା କ୍ଷିତିସିଂହଙ୍କଠୁଁ ଆଣିଥିବା ଆଜ୍ଞାପତ୍ର ତୀରରେ ଯୋଖି ସେ ତୀର ଅପେକ୍ଷା କରିଥିବା ସୈନ୍ୟମାନଙ୍କ ଦଳପତିଙ୍କ ଆଡ଼କୁ ଛାଡ଼ିଦେଲେ । ସେ ତାହା ପଢ଼ି ତାହାକୁ ପୁଣି ଦୁର୍ଗ ଆଡ଼କୁ ତୀରରେ ଯୋଖି ପଠାଇ ଦେଲେ । ସଙ୍ଗେ ସଙ୍ଗେ ଦୁର୍ଗ ଆଡ଼ୁ ଆନନ୍ଦ କୋଳାହଳ ଶୁଭିଲା । ସେ କୋଳାହଳରୁ ବୁଝି ହେଉଥିଲା କି ସେମାନେ ଚନ୍ଦ୍ରବର୍ମାଙ୍କୁ ସ୍ୱାଗତ କରୁଛନ୍ତି ।

ପାହାଡ଼ରୁ ଅବତରଣ କରିବା ନିମନ୍ତେ ପଥର ପାହାଚ ତିଆରି କରା ହୋଇଥିଲା ।



ଇଙ୍ଗିତରେ ତଳେ ଥିବା ଦୁର୍ଗରକ୍ଷୀମାନେ ସେ ପାହାଚ ଦେଖାଇ ଦେଲେ । ପାହାଡ଼ରୁ ତଳକୁ ଯିବା ପାଇଁ ଏଥର ଆଉ କିଛି କଷ୍ଟ ହେଲନାହିଁ । ଅଳ୍ପ ସମୟ ଭିତରେ ସେମାନେ ଯାଇ ଦୁର୍ଗକୁ ବେଷ୍ଟନ କରିଥିବା ପରିଖା ପାଖରେ ପହଞ୍ଚିଗଲେ ।

ସେମାନଙ୍କୁ ସ୍ୱାଗତ କରିବାକୁ ଅଗ୍ରସର ହୋଇ ଆସିଥିବା ସୈନ୍ୟମାନେ ଆନନ୍ଦରେ ଗୁଞ୍ଜରଣ କରୁଥିଲେ । ଚନ୍ଦ୍ରବର୍ମା ସେମାନଙ୍କ ଦଳପତି ଆଡ଼େ ଟିକେ ଦୃଷ୍ଟି ଦେଲେ । ସଙ୍ଗେ ସଙ୍ଗେ ତାଙ୍କ ମନ ବିସ୍ମୟ ଓ ଆନନ୍ଦରେ ଭରିଗଲା । ସେ ଦଳପତି ଆଉ କେହି ନୁହେଁ, ତାଙ୍କ ମିତ୍ର ତଥା ସେବକ ସୁବାହୁ !

ସୁବାହୁ ମଧ୍ୟ ଅଳ୍ପ ସମୟ ଭିତରେ ଚନ୍ଦ୍ରବର୍ମାଙ୍କୁ ଚିହ୍ନି ପକାଇଲେ । କିନ୍ତୁ ସେ ହାତ ହଲାଇ ଯେଉଁ ସଙ୍କେତ ଦେଲେ, ତାର ଅର୍ଥ ହେଉଛି ଦୁହେଁ ପରସ୍ପର ପରିଚିତ ବୋଲି ବର୍ତ୍ତମାନ ପ୍ରକାଶ କରିବା ଉଚିତ ନୁହେଁ ।

ସେହି ଅନୁସାରେ ଚନ୍ଦ୍ରବର୍ମା ନିଜ ମନୋଭାବ ଗୋପନ ରଖି ସୁବାହୁଙ୍କୁ ଅଭିବାଦନ କରି କହିଲେ, "ମହାଶୟ, ଆପଣ ବୋଧହୁଏ ଶିବପୁରର ସେନାପତି । ମୁଁ ରାଜପ୍ରତିନିଧି ବୀରମଲ୍ଲଙ୍କୁ ଭେଟିବାକୁ ଚାହେଁ । ତାହାଙ୍କ ସହ କିଛି ବିଶେଷ କଥାବାର୍ତ୍ତା ଅଛି ।"

"ଆଗନ୍ତୁକ ମହୋଦୟ, ପ୍ରଥମେ ଆପଣ ଭୋଜନ ଏବଂ ବିଶ୍ରାମ କରନ୍ତୁ । ତା'ପରେ ଆପଣ ରାଜପ୍ରତିନିଧିଙ୍କୁ ଭେଟିବେ । ଆପଣଙ୍କ





ଦଳର ସବୁ ଲୋକଙ୍କ ପାଇଁ ଯଥାବିଧି ବ୍ୟବସ୍ଥା କରାହେବ ।"

ଏହା ପରେ ସୁବାହୁ ନିଜ ଅନୁଚରମାନଙ୍କୁ କେତେକ ନିର୍ଦ୍ଦେଶ ଦେଇ ସେଠାରୁ ପଠାଇ ଦେଲେ ଓ ନିଜେ ଚନ୍ଦ୍ରବର୍ମାଙ୍କ ପାଖରେ ରହିଲେ ।

ସମସ୍ତେ ସେଠାରୁ ଚାଲିଯିବା ମାତ୍ରେ ସୁବାହୁ ନତମସ୍ତକ ହୋଇ ଚନ୍ଦ୍ରବର୍ମାଙ୍କୁ ଅଭିବାଦନ କଲେ ଓ ଗଦ୍‌ଗଦ୍ କଣ୍ଠରେ କହିଲେ, "ମହାରାଜ ! ଆଜି ମୋର କେଡ଼େ ସୌଭାଗ୍ୟ ! ଜୀବନରେ ପୁଣି ଆପଣଙ୍କୁ ଭେଟିବି, ସେ ଆଶା ଛାଡ଼ି ଦେଇଥିଲି । ଚାଲନ୍ତୁ, ଘରେ ଯାଇ ସବିଶେଷ ଗପସପ ହେବ ।"

ସୁବାହୁ ଦୁର୍ଗ ଭିତରକୁ ଚାଲିଲେ । ଚନ୍ଦ୍ରବର୍ମା ତାଙ୍କୁ ଅନୁସରଣ କଲେ ।

ଚନ୍ଦ୍ରବର୍ମା ଓ ସୁବାହୁ ଅନେକ ସମୟ ପର୍ଯ୍ୟନ୍ତ କଥାବାର୍ତ୍ତା କଲେ । ସୁବାହୁ ଯାହା କହିଲେ, ସଂକ୍ଷେପରେ ତାହା ଏହିପରି : ସର୍ପକେତୁର ସୈନ୍ୟମାନଙ୍କ ଆକ୍ରମଣରୁ ବଞ୍ଚିବା ନିମନ୍ତେ ଉଭୟ ଚନ୍ଦ୍ରବର୍ମା ଓ ସୁବାହୁ ପାହାଡ଼ ଉପରୁ ନଦୀ ଗର୍ଭକୁ ଡେଇଁ ପଡ଼ିଥିଲେ । ସୁବାହୁ ଭାସି ଯାଇ କିଛି ଦୂରରେ ଅଟକି ରହିଥିଲେ । ଜ୍ଞାନ ଫେରିବା ପରେ କିଛିଦିନ ଭିତରେ ତାଙ୍କ ସହ ଧୀରମଲ୍ଲଙ୍କର ଭେଟ ହୋଇଥିଲା ।

ଧୀରମଲ୍ଲ ସର୍ପକେତୁ ସହ ଏକଦା ବହୁତ ଲଢ଼ିଥିଲେ । କିନ୍ତୁ ଶେଷକୁ ପରାଭୂତ ହୋଇ ନିଜର ଅଳ୍ପ ସଂଖ୍ୟକ ସୈନ୍ୟଙ୍କୁ ଧରି ଏହି ପାର୍ବତ୍ୟ ଅଞ୍ଚଳରେ ଆଶ୍ରୟ ନେଇଥିଲେ । କିଛିଦିନ ପରେ ସେ ରୁଦ୍ରପୁରର ରାଜା ଶିବସିଂହଙ୍କ ସମ୍ପର୍କରେ ଆସିଲେ । ଶିବସିଂହ ତାଙ୍କୁ ଏ ଦୁର୍ଗ ଦାୟିତ୍ୱରେ ରଖିଲେ । ଧୀରମଲ୍ଲ ନିଜ ନାମ ବଦଳାଇ ବୀରମଲ୍ଲ ରଖିଥିଲେ । ସେ ବଞ୍ଚିଛନ୍ତି ବୋଲି ସର୍ପକେତୁ ଯେପରି ନ ଜାଣିବ, ସେଥିସକାଶେ ସେ ନିଜ ନାମ ପରିବର୍ତ୍ତନ କରିଥିଲେ ।

ଏହାପରେ ଚନ୍ଦ୍ରବର୍ମା ନିଜ ଅଭିଜ୍ଞତା ବର୍ଣ୍ଣନା କଲେ । ଯେତେଥର ସେ ନିଜ ଜୀବନ ବିପନ୍ନ କଲେଣି, ଯେପରି ଅଦ୍ଭୁତ ପ୍ରାଣୀ ଓ

ପରିସ୍ଥିତି ସବୁର ସମ୍ପର୍କରେ ସେ ଆସିଲେଣି, ସେସବୁ ଶୁଣି ସୁବାହୁଙ୍କ ବିସ୍ମୟର ସୀମା ରହିଲା ନାହିଁ ।

ଅବଶେଷରେ ଯେତେବେଳେ ଚନ୍ଦ୍ରବର୍ମା ଧୂସର ଦୁର୍ଗ ଉଦ୍ଦେଶ୍ୟରେ ତାଙ୍କ ଅଭିଯାନ କଥା କହିଲେ, ସେତେବେଳେ ସୁବାହୁ ନିର୍ବାକ ଭାବରେ ତାଙ୍କୁ ଅନାଇ ରହିଲେ ।

"କ'ଣ ଭାବୁଛ ?" ଚନ୍ଦ୍ରବର୍ମା ପଚାରିଲେ ।

ସୁବାହୁ ଅଳ୍ପ ହସି କହିଲେ, "ମହାରାଜ ! ହୁଏତ ଆମର ଦୁଃଖର ଦିନ ଶୀଘ୍ର ସରିଯିବ । କଥା କ'ଣ କି, ସର୍ପକେତୁ ମଧ୍ୟ ଧୂସର ଦୁର୍ଗ ସନ୍ଧାନରେ ବାହାରିଛି ବୋଲି ଖବର ପାଇ ରାଜପ୍ରତିନିଧି ଧୀରମଲ୍ଲ ଅଳ୍ପ କିଛି ସୈନ୍ୟ ଧରି ଗୋଟିଏ ଗୋପନ ମାର୍ଗରେ ଯାଇଛନ୍ତି । ସର୍ପକେତୁର ସୈନ୍ୟ ସଂଖ୍ୟା କେତେ ପ୍ରଥମେ ତାହା ଠଉରାଇ ସମ୍ଭବ ହେଲେ ତାକୁ ଆକ୍ରମଣ କରିବା ତାଙ୍କ ଉଦ୍ଦେଶ୍ୟ । ତେବେ ସେ ଏଠାରେ ନାହାନ୍ତି ବୋଲି ଆମେ କାହାକୁ ଜଣାଉ ନାହୁଁ । ଧୀରମଲ୍ଲଙ୍କ ଅଭିଯାନ କେତେଦୂର ସଫଳ ହେବ ଜଣା ନାହିଁ । ସେଥିପାଇଁ ମୁଁ ବଡ଼ ଉତ୍କଣ୍ଠାରେ ଅଛି ।" ସୁବାହୁ କହିଲେ ।

ସର୍ପକେତୁ କଥା ଶୁଣିବା ମାତ୍ରେ ଚନ୍ଦ୍ରବର୍ମା ଉତ୍ତେଜିତ ହୋଇ ଉଠିଲେ । ତାଙ୍କ ମୁହଁ ଲାଲ୍ ଦେଖାଗଲା । ତାଙ୍କ ଆଖି ଯେପରି ସତେ ଜଳୁଥିଲା !




ସୁବାହୁ କହିଲେ, "ମହାରାଜ, ସର୍ପକେତୁ ଖାଲି ବୀରପୁରର ରାଜା ନୁହେଁ, ସେ ସାରା ମହିଷ୍ମତୀ ଭୂଖଣ୍ଡ ଉପରେ ଚକ୍ରବର୍ତ୍ତୀ ବୋଲଉଛି ।"

"ତାହା କିପରି ସମ୍ଭବ ହେଲା ?" ଚନ୍ଦ୍ରବର୍ମା ପଚାରିଲେ ।

"ମହାରାଜା ! ମହିଷ୍ମତିର ଚକ୍ରବର୍ତ୍ତୀ ଯଶୋବର୍ଦ୍ଧନଙ୍କ ମୃତ୍ୟୁ ପରେ ତାଙ୍କ ଜ୍ୟେଷ୍ଠପୁତ୍ର ତପୋବର୍ଦ୍ଧନ ବୈରାଗୀ ହୋଇ ତପସ୍ୟା କରିବାକୁ ଚାଲିଗଲେ । ଅନ୍ୟ ପୁଅ ଗୁଣ-ବର୍ଦ୍ଧନ ସିଂହାସନରେ ବସିଲେ । ତାଙ୍କ ସହ ବନ୍ଧୁତା କରି ତା'ପରେ ବିଶ୍ୱାସଘାତକ ସର୍ପକେତୁ ତାଙ୍କୁ ହତ୍ୟା କରି ତାଙ୍କ ସିଂହାସନ

ମାଡ଼ ଚାଲିଛି । ସର୍ପକେତୁ ବାସ୍ତବରେ ବଡ଼ ସୈତାନ୍ ।”

“ଏତେ ବଡ଼ ରାଜ୍ୟର ଚକ୍ରବର୍ତ୍ତୀ ହୋଇ ମଧ୍ୟ ସମ୍ପତ୍ତି ପାଇଁ ସର୍ପକେତୁର ଆତୁର ଏତେ ଲୋଭ ଯେ ସେ ଧୂସର ଦୁର୍ଗ ଲୁଣ୍ଠନ କରିବାକୁ ଯିବେ !” ଚନ୍ଦ୍ରବର୍ମା କଠୋର କଣ୍ଠରେ କହିଲେ ।

“ସର୍ପକେତୁ ମନରେ ଖାଲି ଯେ ସମ୍ପତ୍ତିର ଲୋଭ ଅଛି, ତାହା ନୁହେଁ, ସେ ରାଜ୍ୟ ବୃଦ୍ଧି ପାଇଁ ମଧ୍ୟ ଲାଳାୟିତ । ସେ ଯେ ଏ ପର୍ଯ୍ୟନ୍ତ ଶିବପୁର ଆକ୍ରମଣ କରି ନାହିଁ, ତାହା ଆମର ସୌଭାଗ୍ୟ । ସେ ଆମକୁ ହେୟ ଜ୍ଞାନ କରେ । ତାହା ଆମ ପକ୍ଷରେ ଗୋଟିଏ ସୁଯୋଗ । ଆମେ ଗୁପ୍ତଚରମାନ ପଠାଇ ତା'ର ଗତିବିଧି ଉପରେ ପୂରା ନଜର ରଖିବାକୁ ସକ୍ଷମ ଅଛୁଁ ।” ସୁବାହୁ କହିଲେ ।

ସେତିକିବେଳେ ଜଣେ ଦୂତ ଆସି ସୁବାହୁଙ୍କ ହାତରେ ଖଣ୍ଡିଏ ପତ୍ର ଧରାଇ ଦେଲା । ସେ ପତ୍ର ପଢ଼ି ସୁବାହୁଙ୍କ ମୁହଁ ଫିକା ପଡ଼ିଗଲା । ସେ ପତ୍ରଟି ଚନ୍ଦ୍ରବର୍ମାଙ୍କୁ ବଢ଼ାଇ ଦେଲେ ।

ଚନ୍ଦ୍ରବର୍ମା ପତ୍ରଟି ପଢ଼ିଲେ । ତାହା ଲେଖିଥିଲେ ଧୀରମଲ୍ଲ । ସେ ସର୍ପକେତୁର ସାମ୍ନା କରିବା ସହଜ ନୁହେଁ ବୋଲି ସୂଚନା ଦେଉଥିଲେ । ସେତିକିବେଳେ ସର୍ପକେତୁ ବୁଝି ପାରିଲା ଯେ ତାଙ୍କୁ କେହି ଆକ୍ରମଣ କରିବାର ଚେଷ୍ଟା କରୁଛି । ଧୀରମଲ୍ଲ ଶିବପୁରର ରାଜ-ପ୍ରତିନିଧି ବୋଲି ମଧ୍ୟ ସେ ଖବର ପାଇ ଯାଇଛି । ତେଣୁ ସେ ଶିବପୁର ଅଭିମୁଖେ ମାଡି ଆସୁଛି । ଧୀରମଲ୍ଲ ସୁବାହୁଙ୍କୁ ସଙ୍ଗେ ସଙ୍ଗେ କିଛି ସୈନ୍ୟ ଧରି ତାଙ୍କ ସାହାଯ୍ୟ ନିମନ୍ତେ ଅଗ୍ରସର ହେବାକୁ ଅନୁରୋଧ କରିଛନ୍ତି ।”

“ମହାରାଜ ! ସର୍ପକେତୁ ଅତ୍ୟନ୍ତ ନିର୍ମମ । ସେ ଯଦି ଏଠାକୁ ଆସିବ, ତେବେ ଏ ଦୁର୍ଗ ଛାରଖାର କରିଦେବ । ଆମେ ସଙ୍ଗେ ସଙ୍ଗେ କିଛି କରିବା ଆବଶ୍ୟକ !” ସୁବାହୁ କହିଲେ ।

(କ୍ରମଶଃ)





# ନାଗ କନ୍ୟା

ନିଶା ଗରଜୁଥାଏ । ଛୁହାକୁ ଛୁହା ଶୀତଳ ପବନ ସାଙ୍ଗକୁ ମଝେ ମଝେ ବର୍ଷା ମଧ୍ୟ ପିଟୁଥାଏ । ବଜ୍ରଧ୍ୱନି ଓ ଶ୍ୱାନଶ୍ୱାପଦଙ୍କ ରଡ଼ ମଝିରେ ଶୁଭୁଥାଏ ଅଶରୀରୀମାନଙ୍କ ଅଟ୍ଟହାସ୍ୟ । ଘନ ଘନ ବିଜୁଳି ଆଲୁଅରେ ଦିଶିଯାଉଥାଏ ଭୟାବହ ମୁହଁଟିମାନ ।

କିନ୍ତୁ ରାଜା ବିକ୍ରମାର୍କ ତିଳେ ମଧ୍ୟ ବିଚଳିତ ବୋଧ ନକରି ପୁନର୍ବାର ସେ ପ୍ରାଚୀନ ବୃକ୍ଷଟି ପାଖକୁ ଲେଉଟି ଆସିଲେ ଓ ବୃକ୍ଷାରୋହଣ କରି ଶବଟିକୁ ଉତାରି ଆଣିଲେ । ତେବେ ଶବଟିକୁ କାନ୍ଧରେ ପକାଇ ସେ ଶୂନ୍‌ଶାନ୍ ଶ୍ମଶାନ ପଥ ଅତିକ୍ରମ କରିବାକୁ ଆରମ୍ଭ କରିବା ମାତ୍ରେ ଶବସ୍ଥିତ ବେତାଳ କହିଲା, "ରାଜା! ତମେ ଏ ଦୁର୍ଯୋଗପୂର୍ଣ୍ଣ ରାତିରେ ଯେ ଏ ପରିଶ୍ରମ କରୁଛ, ଏହାର ମୂଲ୍ୟ କ'ଣ ? ଯଦି ତମର ଉଦ୍ଦେଶ୍ୟ ସଫଳ ହୁଏ, ତେବେ

## ବେତାଳ କଥା



ଏଣେ ଘର କିଣିଥିବା ଲୋକ ଆସି କୁମାରକୁ କହିଲା କି ସପ୍ତାହେ ଭିତରେ ସେ ତା' ମା'ଙ୍କୁ ନେଇ ଘର ଛାଡ଼ି ଚାଲିଯାଉ।

କୁମାର ସବୁଦିନ ସଞ୍ଜରେ ବଡ଼ ମନ ଦୁଃଖରେ ଯାଇ ନଦୀକୂଳରେ ନିର୍ଜନ ସ୍ଥାନରେ ବସୁଥାଏ। କ'ଣ କରିବ ଥଳକୂଳ ପାଉ ନଥାଏ।

ଜହ୍ନ ପଡ଼ୁଥାଏ। ହଠାତ୍ ସେ କାହାର ପାଦଶବ୍ଦ ଓ ହସ ଶୁଣିଲା। ପଛକୁ ଚାହିଁ ଦେଖିବା ବେଳକୁ ଗୋଟିଏ ସୁନ୍ଦରୀ ତରୁଣୀ ଠିଆ ହୋଇଛି।

"ତମେ କିଏ?" କୁମାର ପଚାରିଲା।

"ମୁଁ ଜଣେ ନାଗକନ୍ୟା। ଗଲା ଦୁଇ ତିନିଦିନ ହେବ ପୃଥିବୀ ପୃଷ୍ଠକୁ ବୁଲି ଆସୁଛି। ଦେଖୁଛି ପୃଥିବୀ ବଡ଼ ସୁନ୍ଦର ସ୍ଥାନ। ନାଗଲୋକରେ ଫୁଲ ଫଳ ନାହିଁ; ସୂର୍ଯ୍ୟୋଦୟ ସୂର୍ଯ୍ୟାସ୍ତ, ଜହ୍ନରାତି, ପଶୁ-ପକ୍ଷୀ ଇତ୍ୟାଦି ନାହାନ୍ତି। ପୃଥିବୀ ମୋତେ ଭଲ ଲାଗୁଛି। ତମକୁ ଗତ ଦୁଇ ତିନିରାତି ଧରି ଏଠାରେ ଆସି ବସୁଥିବାର ଦେଖୁଛି। ମନେ ହୁଏ ତମ ମନରେ ସୁଖ ନାହିଁ। କଥା କ'ଣ?"

କୁମାର ନିଜ ଦୁଃଖ କହିଗଲା। ନାଗକନ୍ୟା କହିଲା, "ତମର ଟଙ୍କା ପ୍ରୟୋଜନ ତ? ଅପେକ୍ଷା କର। ମୁଁ ସଙ୍ଗେ ସଙ୍ଗେ ଆସୁଛି।"

ନାଗକନ୍ୟା କୁହୁଡ଼ି ଭିତରେ ଅଦୃଶ୍ୟ ହୋଇଗଲା। ନଦୀରେ ଗୋଟିଏ ଶବ୍ଦ ଶୁଭିଲା। କୁମାର ଅବାକ୍ ହୋଇ ବସିଥାଏ। ସେ ସ୍ୱପ୍ନ ଦେଖୁଛି, ନା ଏହା ସତରେ ହେଉଛି, ଏକଥା ବୁଝିପାରୁ ନଥାଏ।

ଅଳ୍ପ ସମୟ ପରେ ନଦୀରେ ପୁଣି ଥରେ ଶବ୍ଦ ହେଲା। କୁହୁଡ଼ି ଭିତରୁ କନ୍ୟାଟି ହସି ହସି ଆଗେଇ ଆସି କୁମାର ହାତରେ ଗୋଟିଏ ଥଳି ଧରାଇ ଦେଲା। କୁମାର ଖୋଲି ଦେଖିଲା, ତହିଁ ଭିତରେ କେତୋଟି ରତ୍ନ ରହିଛି।

"ତମେ ଏଥିରୁ କିଛି ବିକି କରି ନିଜର ଋଣ ପରିଶୋଧ କରିଦିଅ। ପୂର୍ଣ୍ଣିମା ଦିନ ଏଠାକୁ ଆସିବ। ମୁଁ ବି ଆସିବି। ତମ ହାଲ୍‌ଚାଲ୍ ଶୁଣିବି।"



ତମେ ତା'ର ସୁଯୋଗ ଗ୍ରହଣ କରିବାକୁ ପ୍ରସ୍ତୁତ ରହିଥିବ କି? ଅନେକ ସମୟରେ ସୁବର୍ଣ୍ଣ ସୁଯୋଗ ହାତକୁ ଆସିଲେ ମଧ୍ୟ ଲୋକେ ତା'ର ସଦୁପଯୋଗ କରି ପାରନ୍ତି ନାହିଁ । ତମକୁ ଗୋଟିଏ ଦୃଷ୍ଟାନ୍ତ ଦେଉଛି, ମନଦେଇ ଶୁଣ । ଶୁଣିଲେ ଶ୍ରମଭାର ଲାଘବ ମନେ ହେବ ।"

ବେତାଳ କହିଲା: ରୁଦ୍ରପୁର ନଗରୀର ଅଦୂରରେ ଜଣେ ଧନୀକ ଥିଲେ । ସେ ବେପାରରେ ଥରେ ଏତେ କ୍ଷତି ହେଲେ ଯେ ସର୍ବସ୍ୱାନ୍ତ ହୋଇଗଲେ କହିଲେ ଅତ୍ୟୁକ୍ତି ହେବ ନାହିଁ । ସେ ଦୁଃଖରେ ଘର ଛାଡ଼ି ଚାଲିଗଲେ ।

ତାଙ୍କର ଏକମାତ୍ର ପୁତ୍ର କୁମାର ବଡ଼ ଅସୁବିଧାରେ ପଡ଼ିଲା । ଏଣେ ବାପା ନିରୁଦ୍ଦିଷ୍ଟ, ତେଣେ ମା ବେମାରରେ ପଡ଼ିଥାନ୍ତି । ସେତିକି ନୁହେଁ, ବାପା ଯେଉଁ ମହାଜନଠାରୁ କରଜ କରି ବେପାର ପାଇଁ ଯାଇଥିଲେ, ସେ ମହାଜନ ତା' ଟଙ୍କା ଫେରି ପାଇବା ସକାଶେ ତାଗିଦ କରୁଥାଏ ।

ତେଣେ ଭଉଣୀଟିଏ ବାହା ହେବା ବୟସରେ ପହଞ୍ଚି ଯାଇଥାଏ । ତା' ପାଇଁ ଭଲ ଘରେ ବିବାହର କଥାବାର୍ତ୍ତା ପଡ଼ିଥାଏ । କିନ୍ତୁ ବିବାହ ସକାଶେ ଯେତିକି ଖର୍ଚ୍ଚ ଆବଶ୍ୟକ, ସେତିକି ଯୋଗାଇବା ଭଳି ସଙ୍ଗତି କୁମାରର ନଥାଏ । ମା'ଙ୍କର କିଛି ପୁରୁଣା ଗହଣା ଥିଲା । ସେସବୁର ବେଶ୍ ଦାମ ହେବ । କିନ୍ତୁ ମା ଅସୁସ୍ଥ ଥିବାବେଳେ ଗହଣା ବିକ୍ରି ପ୍ରସଙ୍ଗ ଉଠାଇବାକୁ କୁମାରର ମନ ବଳିଲା ନାହିଁ ।

ଅଗତ୍ୟା କୁମାର ନିଜ ଘର ବନ୍ଧକ କରିଦେଲା । କିନ୍ତୁ ଥରେ ଥରେ ଦୁର୍ଭାଗ୍ୟ ଗୋଟିଏ ଝଡ଼ରେ ଶେଷ ହୁଏ ନାହିଁ । ଗୋଟିଏ ପରେ ଗୋଟିଏ ଝଡ଼ ଆସୁଥାଏ । କୁମାର ଘର ବନ୍ଧକ କରି ରଖିଥିବା ଟଙ୍କାତକ ଚୋରି ହୋଇଗଲା !

କୁମାର ପୁଣି କରଜ କରିବାକୁ ବାଧ୍ୟ ହେଲା । କୌଣସି ମତେ ଭଉଣୀର ବାହାଘର ହୋଇଗଲା । ସୌଭାଗ୍ୟର କଥା, ଜ୍ୱାଇଁଟି ଭଲ ମଣିଷ ।



କୁମାର ନାଗକନ୍ୟାକୁ କୃତଜ୍ଞତା ଜଣାଇଲା । "କିନ୍ତୁ ମନେକର ଆସିବ ନିଶ୍ଚୟ । କାରଣ କୌଣସି ମଣିଷର ଆକର୍ଷଣ ନଥିଲେ ବାରମ୍ବାର ମଣିଷ ଜଗତକୁ ଆସିବା ସମ୍ଭବପର ନୁହେଁ । ତୁମେ ମୋତେ ମନେ ପକାଇ ଏଠାକୁ ଆସିବାକୁ ସ୍ଥିର କଲେ ଜଗତର ବାତାବରଣ ଭିତରକୁ ମୋର ଆସିବା ପଥ ସହଜ ହୋଇଯିବ ।" ନାଗକନ୍ୟା ଚେତାଇ ଦେଲା । କୁମାର ସମ୍ମତ ହେଲା । ନାଗକନ୍ୟା ହସି ହସି ନଈ ଭିତରକୁ ଚାଲିଗଲା ।

ପରଦିନ କୁମାର ଯାଇ ଗୋଟିଏ ରତ୍ନ ବିକି କରି ଲକ୍ଷେ ମୁଦ୍ରା ପାଇଲା । ସେଥିରେ ସେ ଖାଲି ଯେ ନିଜ ଘରଟିକୁ ପୁନର୍ବାର କିଣିଛି ଅଧିକ ମୂଲ୍ୟ ଦେଇ କିଣିନେଲା, ତାହା ନୁହେଁ, ଘରକୁ ବହୁ ମୂଲ୍ୟବାନ୍ ଆସ୍‌ବାବ୍ ପତ୍ରରେ ସଜ୍ଜିତ କଲା । ଘରେ ପୁଣି ଦାସଦାସୀ ଖଟିବାକୁ ଲାଗିଲେ ।

ପୂର୍ଣ୍ଣମୀ ରାତିରେ ସେ ଯାଇ ନଈ କୂଳରେ ପହଞ୍ଚିଲା । ହସି ହସି ନାଗକନ୍ୟା ପହଞ୍ଚିଗଲା ଓ କହିଲା, "ଶୁଣ । ତମ ପାଖରୁ ଯିବା ପରଠୁଁ ମୁଁ ତୁମକୁ ଭୁଲି ପାରୁନାହିଁ । ମୁଁ ତୁମକୁ ବିବାହ କରିବି । ତମେ ନାଗଲୋକକୁ ଚାଲ ।"

କୁମାର ଚମକି ଉଠିଲା ଓ କହିଲା, "ମୋତେ ଟିକିଏ ସମୟ ଦିଅ । ମୁଁ ଭାବିଚିନ୍ତି କହିବି ।"

"ମୁଁ ଇଚ୍ଛା କଲେ ଏହିକ୍ଷଣି ତୁମକୁ ମନ୍ତ୍ରମୋହିତ କରି ନେଇ ଯାଇ ପାରେଁ । କିନ୍ତୁ ମୁଁ ସେପରି କରିବାକୁ ଚାହେଁ ନାହିଁ । ଦୁଇ ଦିନ ଛାଡ଼ି ମୋତେ ଏଠି ଭେଟିବ । ଏହା କହି ନାଗକନ୍ୟା ଚାଲିଗଲା ।

କୁମାର ବଡ଼ ଚିନ୍ତିତ ଭାବରେ ଘରକୁ ଫେରିଲା । ନାଗକନ୍ୟାର ଆକର୍ଷଣ ସେ ଭୁଲି ପାରୁ ନଥାଏ । ଏଣେ ଘର ଦ୍ୱାର ଛାଡ଼ି ନାଗଲୋକକୁ ବା ଚାଲିଯିବ କିପରି ?

ସେ ଘରକୁ ଫେରି ଯାଇ ଦେଖିଲା, ତା' ମା'ଙ୍କ ଅବସ୍ଥା ଅନେକ ଭଲ । ସେ ମା' ପାଖରେ ବସି ସବୁ ଗପିଲା । ମା' ଘରର ଆର୍ଥିକ ସଙ୍କଟ କଟି ଯାଇଛି ବୋଲି ଜାଣି

ଖୁସି ହେଲେ । କିନ୍ତୁ କହିଲେ, "ପୁଅ ! ନାଗକନ୍ୟାକୁ ଯେମିତି ହେଲେ ଏଡ଼ାଇବାକୁ ପଡ଼ିବ । କିନ୍ତୁ ସେ ଅସନ୍ତୁଷ୍ଟ ହେଲେ ଆମର ବିପଦ ହୋଇପାରେ । ତାକୁ କିପରି ଭାବରେ ଏଡ଼ାଇବାକୁ ହେବ ସେ ବିଷୟରେ ମୋ ଧର୍ମଭାଇ ବୀର ସିଂହ ବୁଦ୍ଧି ଦେଇ ପାରିବେ । ତୁ ଯାଇ ତାଙ୍କୁ ଦେଖା କର ।"

"ମା ! ବୀର ସିଂହ ବୁଦ୍ଧିମାନ ଠିକ୍, କିନ୍ତୁ ସେ ସ୍ୱାର୍ଥପର । ତାଙ୍କ ଝିଅକୁ ମୋତେ ବିଭା ଦେବେ ବୋଲି କେତେଥର କହିଥିଲେ, ଅଥଚ ଆମର ଦୁରବସ୍ଥା ବେଳେ ଆମଠୁଁ ଦୂରେଇ ଗଲେ !" କୁମାର କହିଲା ।

ମା' ହସିଲେ ଓ କହିଲେ, "ତୁ ଯାହା କହୁଛୁ, ତାହା ଠିକ୍ । ବୀରସିଂହ ଧୂର୍ତ୍ତ । କିନ୍ତୁ ବର୍ତ୍ତମାନ ଆମ ଅବସ୍ଥା ବଦଳିଗଲାଣି ବୋଲି ସେ ପୁଣି ଝିଅ ଦେବାକୁ ମନ କରିବ ଏବଂ ତୋତେ ଠିକ୍ ପରାମର୍ଶ ଦେବ ।"

କୁମାର ଯାଇ ବୀରସିଂହ ପାଖରେ ପହଞ୍ଚିଲା । ବୀର ସିଂହ ତାକୁ ଆଦର ଅଭ୍ୟର୍ଥନା କଲା ଓ ତା' ସମସ୍ୟା ଶୁଣି କିଛି ପରାମର୍ଶ ଦେଲା । ସେହି ଅନୁସାରେ କୁମାର ପରଥର ନାଗକନ୍ୟା ସହିତ ଦେଖା ହେବା ମାତ୍ରେ ତାକୁ କହିଲା, "ମୁଁ ତମ ସହିତ କିପରି ଚାଲିଯିବି ? ମୋ ମା ଅସୁସ୍ଥ । ଏକମାତ୍ର ନାଗଲତା ଦ୍ୱାରା ସେ ଭଲ ହୋଇ ପାରିବେ । ତମେ ଆଣି ଦେଇ ପାରିବ ?"



ନାଗକନ୍ୟା କହିଲା, "ହଁ, ପାରିବି । ତେବେ ତାହା ଦ୍ୱାରା ମୋର ହଜାର ବର୍ଷ ପରମାୟୁରୁ ପାଞ୍ଚଶହ ବର୍ଷ ନଷ୍ଟ ହେବ । ଠିକ୍ ଅଛି । ବାକି ପାଞ୍ଚଶହରୁ ତମକୁ ଅଢ଼େଇ ଶହ ବର୍ଷ ଦେବି । ତାହାହେଲେ ଆମେ ମୋଟାମୋଟି ସମାନ ସମୟ ବଞ୍ଚିବା ।

ପରଦିନ ନାଗକନ୍ୟା ନାଗଲତା ଆଣି ଦେଲା । ତାହାର ରସ ସେବନ କଲେ ମଣିଷର ଯେ କୌଣସି ବ୍ୟାଧି ଦୂର ହୋଇଯାଏ । ତାହା ସେବନ କରି କୁମାରର ମା ପୁରାପୁରି ଭଲ ହୋଇଗଲେ । ସେତିକି ନୁହେଁ, ବୀର ସିଂହ ମଧ୍ୟ ନିଜର କୌଣସି ରୋଗରୁ ମୁକ୍ତ ହୋଇଗଲେ ।



କାହିଁକି, ତାଙ୍କୁ ଫେରାଇ ଆଣି ହେବ। ତେବେ ମଣିଷ ଜଗତର ଏସବୁ ବ୍ୟାପାରରେ ମୋତେ ହସ୍ତକ୍ଷେପ କରିବାକୁ ହେଲେ ମୋର ଆୟୁ ଆହୁରି ଶହେ ବର୍ଷ କମିଯିବ। ଠିକ୍ ଅଛି। ତମ ପାଇଁ ମୁଁ ସବୁ କିଛି ତ୍ୟାଗ କରି ପାରିବ। ଆଗାମୀ ଦଶମୀ ତିଥିରେ ମୋତେ ଏଠି ଭେଟିବ।"

ଏହାର ଦୁଇଦିନ ଭିତରେ କୁମାରର ବାପା ଲେଉଟି ଆସିଲେ। ଘରେ ଯେପରି କାହାରି ଆନନ୍ଦର ସୀମା ରହିଲା ନାହିଁ, ଘରର ସମୃଦ୍ଧି ଦେଖି ତାଙ୍କର ନିଜର ମଧ୍ୟ ଆନନ୍ଦର ସୀମା ରହିଲା ନାହିଁ।

ଦଶମୀ ପୂର୍ବ ଦିନ ବୀରସିଂହ କୁମାରକୁ କହିଲେ, "ଏଥର ନାଗକନ୍ୟାକୁ କହିଦିଅ କି ସେ ଯଦି ତୁମକୁ ପ୍ରକୃତରେ ଭଲ ପାଏ, ତେବେ ସେ ନିଜେ ସ୍ୱାଭାବିକ ମଣିଷ ଝିଅଟିଏ ରୂପେ ଆସି ତମ ସହ ଘର କରୁ। ମୁଁ ଜାଣେ, ତା' ହେଲେ ସେ ହୁଏତ ପଳାଇବ, ନହେଲେ ଶୀଘ୍ର ମରିଯିବ।"

"ଜଣେ ତାନ୍ତ୍ରିକ କହିଛନ୍ତି, ନାଗକନ୍ୟା ଯେପରି ଆମର କୌଣସି ଅନିଷ୍ଟ କରି ପାରିବ ନାହିଁ, ସେଥିପାଇଁ ସେ ବ୍ୟବସ୍ଥା କରିବେ। ବୀରସିଂହ ଯାହା କହୁଛନ୍ତି, ତୁ ସେଇଆ କର।" କୁମାରର ମା କହିଲେ।

କୁମାର ଦଶମୀ ରାତିରେ ନାଗକନ୍ୟାକୁ ସେଇଆ କହିଲା। ନାଗକନ୍ୟା ଦୀର୍ଘନିଃଶ୍ୱାସ

ପୁଣି ଯେତେବେଳେ ନାଗକନ୍ୟା ସହ କୁମାରର ସାକ୍ଷାତ୍ ହେବା ବେଳ ହୋଇଗଲା, ସେତେବେଳେ ବୀରସିଂହ କୁମାରକୁ କହିଲା, "ଦେଖ ବାପା, ନାଗକନ୍ୟାକୁ ତ ଯେ କୌଣସି ମତେ ଆମ ପରିସରରୁ ଦୂରେଇ ରଖିବାକୁ ହେବ, ଖାଲି କୌଶଳରେ ସେ କାମ କରିବା କଥା। ସେ ଯେପରି ଆମ ଉପରେ ପ୍ରତିଶୋଧ ନ ନିଏ। ବର୍ତ୍ତମାନ ତାକୁ କୁହ, ତମ ବାପା ଘରକୁ ନ ଫେରିଲେ ତମେ ତା' ସହ ନାଗଲୋକକୁ କିପରି ବା ଯାଇ ପାରିବ ?"

କୁମାର ତାହାହିଁ କଲା। ନାଗକନ୍ୟା କହିଲା, "ତମ ବାପା ଯେଉଁଠି ଥା'ନ୍ତୁ ନା

ଛାଡ଼ି କହିଲା, "ମୁଁ ମଣିଷ ରୂପରେ ତମ ଲୋକାଳୟରେ ରହିଲେ ମାତ୍ର ପାଞ୍ଚବର୍ଷ ବଞ୍ଚିବି । ହେଉ । ଯଦି ତାହାହିଁ ତମର ଇଚ୍ଛା, ମୋର ଆପତ୍ତି ନାହିଁ । ମୁଁ ତମ ପାଇଁ ନାଗଲୋକ ଚିରଦିନ ସକାଶେ ପରିତ୍ୟାଗ କରିବାକୁ ପ୍ରସ୍ତୁତ ।"

କୁମାର ନାଗକନ୍ୟା ହାତ ଧରି ପକାଇ କହିଲା, "ନା । ଦରକାର ନାହିଁ । ମୁଁ ତମ ସହ ନାଗଲୋକକୁ ଯିବାକୁ ପ୍ରସ୍ତୁତ ।"

ନାଗକନ୍ୟାର ଆନନ୍ଦ କହିଲେ ନସରେ !

ବେତାଳ କାହାଣୀଟି ଏଇଠାରେ ସମାପ୍ତ କରି କହିଲା, "ରାଜା ! ମୋର ଗୋଟିଏ ସନ୍ଦେହ ଅଛି । ଯେତେବେଳେ କୁମାରର ସବୁ ସର୍ତ୍ତ ନାଗକନ୍ୟା ମାନିଗଲା, ସେତେବେଳେ ହଠାତ୍ କୁମାର ନାଗକନ୍ୟା କଥା ମାନି ତା' ସହ ନାଗଲୋକ ଯିବାକୁ ବାହାରି ପଡ଼ିଲା କାହିଁକି ? ସେ କ'ଣ ହଠାତ୍ ପାଗଳ ହୋଇଗଲା ? ପାରିଲେ ମୋ ପ୍ରଶ୍ନର ଉତ୍ତର ଦିଅ । ଉତ୍ତର ଦେବାର ଶକ୍ତି ଥିବା ସତ୍ତ୍ୱେ ଯଦି ନୀରବ ରହିବ, ତେବେ ତମ ଶିର ହେବ ଖଣ୍ଡୀଭୂତ ।"

ମୁହୂର୍ତ୍ତେ ମଧ୍ୟ ବିଳମ୍ବ ନକରି ରାଜା ବିକ୍ରମାର୍କ ଉତ୍ତର ଦେଲେ, "ନାଗକନ୍ୟା ଯେ କୁମାରର ସବୁ ସର୍ତ୍ତ ମାନିଗଲା, କୁମାରର ମନରେ ପରିବର୍ତ୍ତନ ପାଇଁ ତାହାହିଁ ଦାୟୀ । ସେ ଦେଖିଲା, ନାଗକନ୍ୟାର ପ୍ରେମ ଅତ୍ୟନ୍ତ ମହତ୍ । ପ୍ରେମ ପାଇଁ ନାଗକନ୍ୟା ନିଜର ସବୁ ସ୍ୱାର୍ଥ ଜଳାଞ୍ଜଳି ଦେବାକୁ ପ୍ରସ୍ତୁତ । ଅଥଚ ତା' ନିଜ ଲୋକେ ନାଗକନ୍ୟାଠୁଁ ସବୁ ପ୍ରକାର ସୁବିଧା ଉଠାଇ ନେଇ ତାକୁ ଠକି ଦେବା ମତଲବ୍‌ରେ ଅଛନ୍ତି । ହଠାତ୍ ମଣିଷମାନଙ୍କ ବିବେକ ଓ ବ୍ୟବହାର ପ୍ରତି କୁମାର ମନରେ ବିରକ୍ତି ଆସିଗଲା । ତେଣୁ ସେ ମଣିଷ ଜଗତ ଛାଡ଼ି ନାଗକନ୍ୟା ସହ ଚାଲିଯିବାକୁ ସ୍ଥିର କଲା ।"

ରାଜାଙ୍କ ମୌନଭଙ୍ଗ ହେବା ମାତ୍ରେ ଶବ ସହ ଶବସ୍ଥିତ ବେତାଳ ତାଙ୍କ କାନ୍ଧରୁ ଖସିଯାଇ ପୁନରାୟ ବୃକ୍ଷ ଡାଳରେ ଝୁଲି ପଡ଼ିଲା । (କଳ୍ପିତ)



# ଅକୁହା ରହସ୍ୟ

ବୈଦ୍ୟ ହିସାବରେ କୃପାନନ୍ଦଙ୍କର ବେଶ୍ ଖ୍ୟାତି ଥିଲା । ରୋଗୀର ରୋଗ ପରୀକ୍ଷା କରିବା ସକାଶେ ଯାହା ଯାହା କହିବାର କଥା ସବୁ କହିସାରି ସେ ରୋଗୀକୁ ପଚାରୁଥିଲେ, "ତୁମେ ଗତକାଲି କ'ଣ ଖାଇଥିଲ ? ପଅରି ଦିନ ଓ ତହିଁ ପୂର୍ବଦିନ କ'ଣ ଖାଇଥିଲ ?" ରୋଗୀ ସ୍ମରଣ କରି ଉତ୍ତର ଦିଏ । ବୈଦ୍ୟ ମନ ଦେଇ ଶୁଣନ୍ତି । ତା'ପରେ ଔଷଧ ଦିଅନ୍ତି ।

ବୈଦ୍ୟ କୃପାନନ୍ଦଙ୍କ ପାଖରେ ଶିଷ୍ୟ ଭାବରେ ରହିଥାନ୍ତି ତାଙ୍କ ଜାମାତା ସୌମ୍ୟ । ଦିନେ ସୌମ୍ୟ ତାଙ୍କ ସ୍ତ୍ରୀଙ୍କୁ କହିଲେ, "ତୁମ ବାପା ମୋତେ ତାଙ୍କ ଚିକିତ୍ସା ପଦ୍ଧତିର ସବୁ ସୂତ୍ର କହି ଦେଇଛନ୍ତି । କିନ୍ତୁ ସେ ଗୋଟାଏ ରହସ୍ୟ କହି ନାହାନ୍ତି । ରୋଗୀ ଚାରି ପାଞ୍ଚଦିନ ଧରି କ'ଣ ଖାଇଛି, ସେକଥା ସେ କାହିଁକି ପଚାରନ୍ତି ?"

ବୈଦ୍ୟଙ୍କ ଝିଅ ହସିଲେ ଓ କହିଲେ, "ବାପା ସେକଥା ତୁମକୁ କହି ନାହାନ୍ତି କି କହି-ପାରିବେ ନାହିଁ । ମୁଁ କହି ଦେଉଛି । ସେ ରୋଗୀର ଖାଦ୍ୟ-ତାଲିକା ପଚାରି ବୁଝିବା ଦ୍ୱାରା ତା'ର ଆର୍ଥିକ ସ୍ଥିତି ଜାଣି ନିଅନ୍ତି । ସେହି ଅନୁସାରେ ସେ ତା' ପାଇଁ ଔଷଧର ଦାମ ନିରୂପଣ କରନ୍ତି । କି ଔଷଧ ଦେବେ, ସେକଥା ସେ ନାଡ଼ି ପରୀକ୍ଷା କରି ଆଗରୁ ସ୍ଥିରକରି ସାରିଥାନ୍ତି ।"






ଭାରତର ମନ୍ଦିର

# କାଳିଘାଟ

ଅନେକ ଦିନ ତଳର କଥା । ଆତ୍ମାରାମ ନାମକ ଜଣେ ବ୍ରାହ୍ମଣ ଗଙ୍ଗାନଦୀ କୂଳରେ ଥିବା ଗୋଟିଏ ଅରଣ୍ୟ କଡ଼ରେ ବସି ସବୁଦିନେ ସନ୍ଧ୍ୟାବେଳେ ଧ୍ୟାନ କରୁଥାନ୍ତି । ବଣ ପାଖରେ ଗୋଟିଏ ଗାଁରେ ତାଙ୍କ ଘର ।

ଦିନେ ସନ୍ଧ୍ୟାବେଳେ ଧ୍ୟାନ ଭଙ୍ଗ ହେବା ପରେ ସେ ଦେଖିଲେ ଠାଏଁ ନଈ ଭିତରୁ ଗୋଟିଏ ପ୍ରକାର ଦ୍ୟୁତି ବାହାରୁଛି । ସେ ଆଶ୍ଚର୍ଯ୍ୟ ହେଲେ । କିନ୍ତୁ ସେତେବେଳେ ଅନ୍ଧାର ହୋଇ ଆସୁଥାଏ । ସେତେବେଳେ ସେ ସେଠାକୁ ଗଲେ ନାହିଁ ।





କିନ୍ତୁ ରାତିଯାକ ସେ ଶୋଇ ପାରିଲେ ନାହିଁ । ନଦୀ ଗର୍ଭର ସେ ଆଲୋକ ତାଙ୍କ ଚିତ୍ତକୁ ଆନ୍ଦୋଳିତ କରିବାକୁ ଲାଗିଲା । ସୂର୍ଯ୍ୟୋଦୟ ପୂର୍ବରୁ ସେ ଯାଇ ନଦୀ ପାଖରେ ପହଞ୍ଚିଲେ । ଆଲୋକ ସ୍ଫୁରିତ ହେଉଥିବା ସ୍ଥାନକୁ ଯାଇ ସେ ଦେଖିଲେ ନଦୀ ଶଯ୍ୟାରେ ପଡ଼ି ରହିଛି ପଥରର ଖଣ୍ଡିଏ ହାତ ।




ଆତ୍ମାରାମ ସେ ପଥର ହାତକୁ ଘରକୁ ନେଇ ଆସିଲେ। ରାତିରେ ସେ ଦେଖିଲେ ଗୋଟିଏ ଅଦ୍ଭୁତ ସ୍ୱପ୍ନ। ସେ ଦେଖିଲେ ଦକ୍ଷ ଯଜ୍ଞ ପାଖରେ ଦକ୍ଷଙ୍କ ଦ୍ୱାରା ଶିବନନ୍ଦା ସହ୍ୟ କରି ନପାରି ଜ୍ଞାନ ହରାଇ ପଡଯାଉଛନ୍ତି ଦେବୀ ସତୀ।

ଆତ୍ମାରାମ ଆହୁରି ମଧ୍ୟ ଦେଖିଲେ ସତୀଙ୍କ ମୃତଦେହ କାନ୍ଧରେ ପକାଇ ଶିବ ସ୍ୱର୍ଗ ଓ ପୃଥିବୀ ବ୍ୟାପି ବୁଲୁଛନ୍ତି। ସେ ସମ୍ପୂର୍ଣ୍ଣ ଅନ୍ୟମନସ୍କ। ତାଙ୍କୁ ବାଧା ଦେବା ଭଳି ଶକ୍ତି ବା ସାହସ ମଧ୍ୟ କାହାରି ନାହିଁ।





ଅବଶେଷରେ ବଷ୍ଣୁ ତାଙ୍କ ସୁଦର୍ଶନ ଚକ୍ରକୁ ପ୍ରେରଣ କଲେ। ଚକ୍ର ଆସି ସତୀଙ୍କ ମୃତଦେହକୁ ଖଣ୍ଡ ଖଣ୍ଡ କରି-ଦେଲା। ଭାରତର ଭିନ୍ନ ଭିନ୍ନ ସ୍ଥାନରେ ଏଇ ଅଙ୍ଗ ପ୍ରତ୍ୟଙ୍ଗ ପଡ଼ିଲା। କଣ ପାଖରେ ସେ ଗଙ୍ଗାନଦୀ ଗର୍ଭରେ ପଡ଼ିଲା ଗୋଟିଏ ହାତ।

ଆତ୍ମାରାମ ବୁଝିଲେ କି ସେ ଯେଉଁ ବସ୍ତୁଟି ଘରକୁ ଆଣିଥିଲେ ତାହା ଦେବୀଙ୍କରହିଁ ହାତ—ଅଲୌକିକ କାରଣରୁ ପଥରରେ ହୋଇଛି ରୂପାନ୍ତରିତ । ସେ କାଳୀମୂର୍ତ୍ତି ନିର୍ମାଣ କରି ତହିଁ ଭିତରେ ସେ ହାତଟି ଥାପିଲେ ଓ ବଣ ଭିତରେ ଗୋଟିଏ କୁଡ଼ିଆରେ ମୂର୍ତ୍ତିଟି ସ୍ଥାପନ କରି ପୂଜା କଲେ ।






କେତେ ବର୍ଷ ବିତିଗଲା । ଆତ୍ମାରାମ ପ୍ରତିଷ୍ଠିତ କୁଡ଼ିଆ ମନ୍ଦିରଟି ବଣ ଭିତରେ ଥିବା ଯୋଗୁଁ ଖୁବ୍ କମ୍ ଲୋକେ ସେ ବିଷୟରେ ଜାଣିଥିଲେ । ଦିନେ ଜଣେ ଜମିଦାର ନଈରେ ଯାଉଥିବାବେଳେ ବଣ ଭିତରୁ ଶଙ୍ଖ ଧ୍ୱନି ଶୁଣିଲେ ।

ସେ କୌତୂହଳୀ ହୋଇ ବଣ ଭିତରକୁ ଯାଇ ଦେଖିଲେ କାଳୀମୂର୍ତ୍ତି ଆଗରେ କେତେଜଣ ସାଧୁ ବସିଛନ୍ତି । ମୂର୍ତ୍ତି ତାଙ୍କୁ ଖୁବ୍ ଜୀବନ୍ତ ମନେ ହେଲା । ସେ ଦେବୀଙ୍କୁ ପ୍ରଣାମ କଲେ ଓ ସେଠାରେ କିଛି ସମୟ ଅତିବାହିତ କଲେ ।






ସାଧୁମାନଙ୍କ ଅନୁମତି କ୍ରମେ ଜମିଦାର ସେଠାରେ ଦେବୀଙ୍କ ନିମନ୍ତେ ମନ୍ଦିରଟିଏ ନିର୍ମାଣ କଲେ । କ୍ରମେ ସେଠାକୁ ବହୁ ଲୋକଙ୍କ ସମାଗମ ହେଲା । ବଣ ଅପସରି ଗଲା । ବ୍ରାହ୍ମଣ ଓ ବଣିକ-ମାନେ ମନ୍ଦିର ଚରିପଟେ ଘର ଓ ଦୋକାନ ନିର୍ମାଣ କଲେ ।

କ୍ରମେ ମନ୍ଦିର ଆହୁରି ବଡ଼ ଭାବରେ ନିର୍ମିତ ହେଲା । ଅଧିକରୁ ଅଧିକ ଲୋକ ସେଠାକୁ ଆସିବାକୁ ଲାଗିଲେ । ନାନା ପ୍ରକାର ଉତ୍ସବ ଓ ପର୍ବ ମଧ୍ୟ ପାଳିତ ହେଲା । ଅଷ୍ଟାଦଶ ଶତାବ୍ଦୀ ବେଳକୁ ସେ ସ୍ଥାନ କାଳିଘାଟ ନାମରେ ପ୍ରସିଦ୍ଧି ଲାଭ କରିଥାଏ ।





ଇଷ୍ଟଇଣ୍ଡିଆ କୋମ୍ପାନୀ ସେଠାରେ କଲିକତା ନଗରୀର ମୂଳଦୁଆ ପକାଇଲେ । ସମ୍ଭବତଃ କଲିକତା ନାମଟି କାଳିଘାଟର ଅପଭ୍ରଂଶ । ଆଜି ବି କଲିକତା ନଗରୀର ଏକ ବିଶେଷ ଆକର୍ଷଣୀୟ ଅନୁଷ୍ଠାନ ହେଲା କାଳିଘାଟ ମନ୍ଦିର ।



# ଅଦ୍ଭୁତ କୁକୁର

ବାଗଦାଦ୍ ସହରରେ ଥାଏ ନୁମାନ୍ ନାମକ ଜଣେ ଯୁବକ । ତା'ର ଗୋଟିଏ ଦୋକାନ ଥାଏ । ସେଥିରୁ ସେ ଭଲ ଆୟ କରୁଥାଏ । ସେ ଭଲ ଘରର ପୁଅ । ତେଣୁ ତା' ପାଇଁ ବେଶ୍ କିଛି ବିବାହ ପ୍ରସ୍ତାବ ଆସୁଥାଏ ।

କିନ୍ତୁ ନୁମାନ୍ ହଠାତ୍ ଏପରି ଗୋଟିଏ ଝିଅକୁ ବିଭା ହୋଇ ପଡ଼ିଲା, ଯାହା ବିଷୟରେ ତା' ବନ୍ଧୁବାନ୍ଧବ କେହି କିଛି ଜାଣି ନଥିଲେ । ତା' ନାମ ଆଶାନା ।

ଆଶାନା ସୁନ୍ଦରୀ ଓ କଥାବାର୍ତ୍ତାରେ ଅତ୍ୟନ୍ତ ଚତୁର । ତାକୁ ବାହା ହୋଇ ଘରକୁ ଆଣି ନୁମାନ୍‌ର ଖୁସି କହିଲେ ନ ସରେ ।

ପ୍ରଥମ କିଛି ଦିନ ବେଶ୍ ଆନନ୍ଦରେ ବିତିଗଲା । କିନ୍ତୁ ନୁମାନ୍ ଦେଖିଲା ଯେ ଆଶାନା ମୋଟେ ଖିଆ ପିଆ କରୁ ନାହିଁ । ସବୁବେଳେ କହେ କି ତାକୁ ଭୋକ କରୁ ନାହିଁ । ନୁମାନ୍ ବଡ଼ ଆଶ୍ଚର୍ଯ୍ୟ ହେଲା । ଏଣେ ଖିଆ ପିଆ ବିନା ଯେ ଆଶାନା ଦୁର୍ବଳ ହୋଇ ଯାଉଥାଏ, ତାହା ନୁହେଁ । ଏହାର ରହସ୍ୟ କ'ଣ ? ନୁମାନ ଯେତେ ଏକଥା ଭାବିଲା, ତା'ର ବିସ୍ମୟ ବଢ଼ିଲା ସିନା, କିନ୍ତୁ ରହସ୍ୟର ସମାଧାନ ହେଲା ନାହିଁ ।

ଦିନେ ନୁମାନ୍ ଭାବିଲା, ଆଶାନା ବୋଧ ହୁଏ ରାତିରେ ସେ ଶୋଇ ପଡିବା ପରେ ଗୋପନରେ ଖିଆ ପିଆ କରୁଛି । କିନ୍ତୁ ସେପରି ବା ସେ କାହିଁକି କରିବ ? ଯାହାହେଉ, ନୁମାନ୍ ସେଦିନ ରାତିରେ ନିଦର ଛଳନା କରି ଚେଇଁ ରହିଲା ।

ମଝି ରାତି ବେଳକୁ ଆଶାନା ଧିରେ ଧିରେ ବିଛଣାରୁ ଉଠି ଘରୁ ବାହାରିଗଲା । ନୁମାନ୍ ଲୁଚି ଲୁଚି ତାକୁ ଅନୁସରଣ କଲା । ଆଶାନା



ସହର ବାହାରେ ଥିବା କବରଖାନା ପାଖରେ ପହଞ୍ଚିଲା । ନୁମାନ୍‌ର ବିସ୍ମୟର ସୀମା ନାହିଁ । ସେ ଦେଖିଲା, କବରଖାନାକୁ ଘେରି ରହିଥିବା ପ୍ରାଚୀର ଉପରେ ଗୋଟିଏ ଅଦ୍ଭୁତ ଜୀବ ବସିଛି । ନୁମାନ୍‌ର ଦେହ ହାତ ଭୟରେ ଥଣ୍ଡା ହୋଇଗଲା, କାରଣ ସେ ବୁଝି ପାରିଲା, ସେ ଜୀବଟି ଗୋଟିଏ ପିଶାଚ ।

ପିଶାଚ ହାତ ବଢ଼ାଇ ଦେଲା । ଆଶାନା ତା' ହାତ ଧରି ଲଂଫ ଦେଇ ପାଚେରି ସେ ପଟକୁ ଡେଇଁ ପଡ଼ିଲା । କବରଖାନା ଭିତରେ ସେ ଦୁହେଁ କ'ଣ ଖିଆ ପିଆ କରୁଥିବେ, ସେକଥା ଭାବିବାକୁ ନୁମାନ୍ ସାହସ କଲା ନାହିଁ ।

ନୁମାନ ଘରେ ଆସି ଶୋଇ ପଡ଼ିଲା ।

ଘଣ୍ଟାକ ପରେ ଆଶାନା ଫେରି ଆସିଲା ।

ସକାଳେ ସାହସ ସଞ୍ଚୟ କରି ନୁମାନ୍ କହିଲା, "ଆଶାନା ! ତମ ରୁଚି ଯାହା ହେଉନା କାହିଁକି, ସେହି ଅନୁସାରେ ଖାଦ୍ୟ ଯୋଗାଇ ଦେବା ଭଳି ଶକ୍ତି ମୋର ଅଛି । ରାତିରେ କବରଖାନାକୁ ଯିବା ଦରକାର କ'ଣ ?"

ଏ ପ୍ରଶ୍ନ ଶୁଣିବା ମାତ୍ରେ ଆଶାନାର ଆଖି ଦୁଇଟି ଜଳନ୍ତା ଅଙ୍ଗାର ଭଳି ଧକ୍ ଧକ୍ କରି ଉଠିଲା । ସେ ଚଟାପଟ ନିଜ ହାତକୁ ଟିକିଏ ପାଣି ନେଇ ସେଥିରେ ମନ୍ତ୍ର ଫୁଙ୍କି ନୁମାନ୍ ଉପରକୁ ଛାଟିକାଇ ଦେଲା । ନୁମାନ୍ ତତ୍‌କ୍ଷଣାତ୍ କୁକୁର ପାଲଟି ଗଲା ।

ଆଶାନା ଖଣ୍ଡିଏ ଲାଠି ଉଠାଇ କୁକୁରକୁ ବାଡ଼େଇବାକୁ ବସିଲା । କୁକୁର-ରୂପୀ ନୁମାନ୍ ପଳାଇଲା ।

ସେ କବାଟ ପାଖରେ ହେବା ବେଳକୁ ଆଶାନା ଏଡ଼େ ଯୋରରେ କବାଟ ବାଡ଼େଇ ଦେଲା ଯେ ସେଥିରେ କୁକୁରର ମୁଣ୍ଡ ଚୂନା ହୋଇଯାଇଥାନ୍ତା । କିନ୍ତୁ ଦୈବାତ୍ କବାଟ ତା' ଲାଞ୍ଜରେ ବସିଲା; ଲାଞ୍ଜଟି କଟିଗଲା ।

ରାସ୍ତାରେ ସେତେବେଳେ ଅନେକ ଲୋକ ଯିବା ଆସିବା କରୁଥିଲେ । ସେଥିପାଇଁ ଆଶାନା ରାସ୍ତାକୁ ବାହାରି ପାରିଲା ନାହିଁ । କୁକୁର-ରୂପୀ ନୁମାନ୍ ବାରନ୍ଦାରେ ଠିଆ ହୋଇ କ'ଣ କରିବ ସେକଥା ଭାବିପାରୁ ନଥାଏ ।

ଏଣେ ଲଞ୍ଜ କଟିଯିବା ଯୋଗୁଁ ଭୀଷଣ ଯନ୍ତ୍ରଣା ହେଉଥାଏ । ସେ ବିକଳରେ ରଡ଼ ଛାଡୁଥାଏ, ପୁଣି ଉପୁରେ ନୀରବ ହୋଇ ଯାଉଥାଏ ।

ରାସ୍ତାରୁ ଲୋକେ ଚାଲ୍‌ଯିବା ମାତ୍ରେ ଆଣାନା ଲଠି ଧରି ତାକୁ ବାଡ଼େଇବାକୁ ବାହାରି ଆସିଲା । ନୁମାନ୍ ତାକୁ ଦେଖି ନଥାଏ । ଯାହାହେଉ, ତା' ଉପରେ ଲଠି ମାଡ଼ ବସିବା ପୂର୍ବରୁ ସେ ଚମକି ପଡ଼ି ଖସିଗଲା ।

ନୁମାନ୍ ଦୌଡ଼ ରାସ୍ତାକୁ ଯିବା ମାତ୍ରେ ଅନ୍ୟ କୁକୁରମାନେ ତାକୁ ଗୋଡ଼ାଇଲେ । ପ୍ରାଣ ବିକଳରେ ସେ ଗୋଟିଏ ଦୋକାନ ଭିତରେ ପଶିଗଲା । ସେ ଦୋକାନୀ ତାକୁ ଆଶ୍ରୟ ଦେଲା ।

ନୁମାନ୍ କ୍ରମେ ଦୋକାନୀର ପ୍ରିୟଭାଜନ ହେଲା । ଦିନେ ଜଣେ ଲୋକଠାରୁ ଦୋକାନୀ ଟଙ୍କା ଗଣିନେଲାବେଳେ ଗୋଟିଏ ଟଙ୍କା ଜାଲ୍ ବୋଲି କହିବାରୁ ଲୋକଟି ତାହା ଜାଲ୍ ନୁହେଁ ବୋଲି କହିଲା ।

"ଦେଖ, ମୁଁ ଦୈନିକ କେତେଥର ଟଙ୍କାପଇସା ଗଣୁଛି । ତେଣୁ ମୋ ପକ୍ଷରେ ଜାଲ୍ ଟଙ୍କା ଓ ଖାଣ୍ଟି ଟଙ୍କା ଭିତରେ ପାର୍ଥକ୍ୟ ବାରିବା ସହଜ । ତମେ ସେତେଦୂର ଧରି ପାରିବ ନାହିଁ । ମୁଁ କହୁଛି, ଏହା ଜାଲ୍ ଟଙ୍କା ।" ଦୋକାନୀ କହିଲା ।

"କଦାପି ନୁହେଁ । ଏହା ଖାଣ୍ଟି ଟଙ୍କା ।"



"ଆରେ ଭାଇ, ଏଇଟା ଯେ ଜାଲ୍ ଟଙ୍କା, ଏକଥା ମୁଁ କାହିଁକି, ମୋ କୁକୁର ବି କହି ଦେବ !" ଦୋକାନୀ ବିରକ୍ତିରେ କହିଲା ।

"ସତେ ?" ଏହା କହି ଗରାଖ କୁକୁର ଆଗରେ ଟଙ୍କାତକ ବୁଣିଦେଲା । ନୁମାନ୍ ଭଲ ଟଙ୍କା ଗୁଡ଼ିକୁ ଗୋଟିଏ କଡ଼କୁ ଠେଲି ଦେଇ କେବଳ ଜାଲ୍ ଟଙ୍କାଟି ଅନ୍ୟ କଡ଼କୁ ଠେଲି ଦେଲା । ସେଥିରେ ଗରାଖ ଯେତିକି ଆଶ୍ଚର୍ଯ୍ୟ ହେଲା, ଦୋକାନୀ ବି ସେତିକି ହେଲା । ସେ ତା' ସାଙ୍ଗ ଦୋକାନୀମାନଙ୍କୁ ସେକଥା କହିଲା । ସମସ୍ତେ ବାରମ୍ବାର ପରୀକ୍ଷା କରି ଦେଖିଲେ, ବାସ୍ତବିକ କୁକୁରଟି ଜାଲ୍ ଟଙ୍କା ଚିହ୍ନି ଦେଉଛି ।

ଦିନେ ଦୋକାନରେ କେତେଜଣ କୁକୁରର ଏହି ଅଦ୍ଭୁତ ବିଦ୍ୟା ଦେଖୁଥିବା ବେଳେ ଜଣେ ବୁଢ଼ୀ ସେ ବାଟରେ ଯାଉଁ ଯାଉଁ ଅଟକିଗଲେ । ସେ କୁକୁରର ଦୃଷ୍ଟି ଆକର୍ଷଣ କରି ନିଜ ପଛରେ ତାକୁ ଆସିବାକୁ ସଙ୍କେତ ଦେଲେ । କୁକୁର ତାଙ୍କୁ ଅନୁସରଣ କଲା । ବୁଢ଼ୀ ନିଜ ଘରକୁ ଯାଇ ପାଟି କରି ତା' ଝିଅକୁ ଡାକିଲା । ଜଣେ ସୁନ୍ଦରୀ ଯୁବତୀ ବାହାରି ଆସିଲା । ବୁଢ଼ୀ କହିଲା, "ଝିଅ ! କୁକୁର କେବେ ନକଲି ଟଙ୍କା ! ଅସଲି ଟଙ୍କାର ପାର୍ଥକ୍ୟ ବାରି ପାରିବାର ଶୁଣିଛୁ ? ମୋର ଧାରଣା ଇଏ ମଣିଷ । କେହି ମନ୍ତ୍ର କରି ଏମିତି କରିଛି ।"

ନୁମାନ୍ ଏକଥା ଶୁଣି ଖଣ୍ଡିଆ ଲାଞ୍ଜ ହଲାଇ ବୁଢ଼ୀର ଗୋଡ଼ରେ ମୁଣ୍ଡିଆ ମାରିବାକୁ ଲାଗିଲା । ସେ ଯୁବତୀକୁ ଅନେକ ମନ୍ତ୍ର ଜଣା ଥିଲା । ତେବେ ସେ କେବଳ ଭଲକାମ ପାଇଁ ନିଜ ମନ୍ତ୍ର ଶକ୍ତି ପ୍ରୟୋଗ କରୁଥାଏ ।

ଯୁବତୀ କିଛି ମନ୍ତ୍ର ପାଣି କୁକୁର ଉପରେ ସିଞ୍ଚି ଦେବା ମାତ୍ରେ ନୁମାନ୍ ମଣିଷରେ ପରିଣତ ହେଲା । ସେ ନିଜର ଦୁର୍ଭାଗ୍ୟ ଗପିଲା । ଯୁବତୀଟି ତାକୁ ଗୋଟିଏ ମଂତ୍ର ଶିଖାଇଦେଲା । ପରଦିନ ସକାଳେ ସେ ନିଜ ଘରେ ଯାଇ ପହଞ୍ଚିଲା । ଆଶାନା କୁଆଡ଼େ ଯାଇଥାଏ । ସେ ଘର ଭିତରେ ଅପେକ୍ଷା କଲା । ଆଶାନା ଆସି ତାକୁ ଦେଖି ଆଶ୍ଚର୍ଯ୍ୟ ହେବା ସଙ୍ଗେ ସଙ୍ଗେ ଆତଙ୍କିତ ହେଲା । ସେ ଟିକିଏ ପାଣି ପାଇଁ ଏଣେତେଣେ ଅନାଇବା ବେଳକୁ ନୁମାନ୍ ହସିଲା ଓ ନିଜେ ହାତ ମୁଠାରେ ରଖିଥିବା ଧୂଳିରେ ମଂତ୍ର ପଢ଼ି ତା' ଉପରକୁ ଫୋପାଡ଼ି ଦେଲା । ଆଶାନା ପଳାଇ ଯାଉଥିଲା । କିନ୍ତୁ ଧୂଳିରୁ କିଛି ତା' ଉପରେ ପଡ଼ିଲା । ଗୁହୁଁ ଗୁହୁଁ ସେ ଗୋଟାଏ ଗଧରେ ପରିଣତ ହୋଇଗଲା ।

ନୁମାନ୍‌କୁ ଯେଉଁ ଯୁବତୀ ମଣିଷ କରି ଦେଇଥିଲା, କିଛିଦିନ ପରେ ନୁମାନ୍ ତାକୁ ବିଭା ହେଲା ଓ ସୁଖରେ ରହିଲା ।





# ଶିବ ପୁରାଣ

ସେଠାରୁ ଯଜ୍ଞ ଅଶ୍ୱଟି ଅଦୃଶ୍ୟ ହୋଇଯିବାରୁ ସଗରପୁତ୍ରମାନେ ସେହି ସ୍ଥାନଟିକୁ ଖୋଳିବାକୁ ଲାଗିଲେ ଓ ପାତାଳ ପର୍ଯ୍ୟନ୍ତ ବାଟ କରିଦେଲେ । ପାତାଳରେ ପହଞ୍ଚି ଦେଖିଲେ ମହାମୁନି କପିଳ ତପସ୍ୟାରତ । ତାଙ୍କର ନିକଟରେହିଁ ଅଶ୍ୱଟି ଠିଆ ହୋଇ ରହିଛି । ସେମାନେ ଭାବିଲେ କପିଳହିଁ ଅଶ୍ୱଟିକୁ ଏଠାକୁ ନେଇ ଆସିଛନ୍ତି । ତେଣୁ ହଟ୍ଟଗୋଳ ଆରମ୍ଭ କଲେ । ଷାଠିଏ ହଜାର ସଗରପୁତ୍ରଙ୍କ କୋଳାହଳ ଶୁଣି କପିଳଙ୍କ ଧ୍ୟାନ ଭାଙ୍ଗିଗଲା । ବିରକ୍ତ ହୋଇ ସେ ଯେତେବେଳେ ଆଖି ଖୋଲିଲେ ତାଙ୍କ ଆଖିରୁ ବାହାରୁଥିବା କ୍ରୋଧାଗ୍ନିରେ ଷାଠିଏ ହଜାର ସଗରପୁତ୍ର ତତ୍କ୍ଷଣାତ୍ ଭସ୍ମ ହୋଇଗଲେ ।

ନାରଦ ଏକଥା ଯାଇ ରାଜା ସଗରଙ୍କୁ କହିଲେ । ସେ ଦୁଃଖିତ ହେଲେ ଓ ପରେ ଅଶ୍ୱକୁ ଫେରାଇ ଆଣିବାର ଦାୟିତ୍ୱ ସେ ଦେଲେ ଅସମଞ୍ଜସଙ୍କ ପୁତ୍ର ଅଂଶୁମାନଙ୍କୁ । କାରଣ ଯଜ୍ଞ ଅସମାପ୍ତ ରହିବା ରାଜ୍ୟ ତଥା ରାଜାଙ୍କ ପକ୍ଷେ ଅଶୁଭ ।

ଅଂଶୁମାନ ପାତାଳପୁରକୁ ଯାଇ କପିଳଙ୍କ ନିକଟରେ ପହଞ୍ଚିଲେ । ସେ ତାଙ୍କୁ ପ୍ରଣାମ କରି ବିନୀତ ଭାବରେ ଠିଆ ହୋଇଥା'ନ୍ତି । ତାଙ୍କ ବ୍ୟବହାରରେ କପିଳ ସନ୍ତୁଷ୍ଟ ହୋଇ କହିଲେ, "ବତ୍ସ, ମୁ ସବୁ ଜାଣେ । ତୁମେ ଏହି ଅଶ୍ୱକୁ ସଙ୍ଗରେ ନେଇଯାଅ ।"

ଅଂଶୁମାନ ପଚାରିଲେ, "ମହାତ୍ମନ, ଏଇ ମୃତ ସଗରପୁତ୍ରମାନଙ୍କର କିପରି ଊର୍ଦ୍ଧ୍ୱଗତି



ହେବ ସେଥିପାଇଁ କିଛି ଉପାୟ ଆପଣ କହନ୍ତୁ ।

ମୁନି କହିଲେ, "ଶୁଣ, ଅନେକ ଜନ୍ମ ପରେ ଏମାନଙ୍କ ପାପର ପ୍ରାୟଶ୍ଚିତ୍ତ ହେବ । ତୁମର ନାତି ଏମାନଙ୍କୁ ମୁକ୍ତି ଦେବେ ।"

ମୁନିଙ୍କୁ ପୁନଃ ପ୍ରଣାମ କରି ଅଂଶୁମାନ ଯଜ୍ଞାଶ୍ୱକୁ ଧରି ଲେଉଟି ଆସିଲେ ଓ ତାକୁ ନେଇ ସଗରଙ୍କୁ ଅର୍ପଣ କଲେ । ସଗର ଯଥା ସମୟରେ ଅଶ୍ୱମେଧ ଯଜ୍ଞ କଲେ ଓ ତା'ପରେ ଅଂଶୁମାନଙ୍କୁ ଗାଦିରେ ବସାଇ ଅଭିଷେକ କଲେ ।

ରାଜା ହେବା ପରେ ଅଂଶୁମାନ ନିଜ ପିତୃବ୍ୟମାନଙ୍କ ମୁକ୍ତି ବିଷୟରେ ଅନେକ ଚିନ୍ତା କରୁଥା'ନ୍ତି । ଦିନେ ସେଇ ବିଷୟରେ ଚିନ୍ତା କରି ସେ ବିମର୍ଷ ହୋଇ ବସିଥିବା ସମୟରେ ଗରୁଡ଼ ତାଙ୍କୁ କହିଲେ, "ମହାରାଜ, ଆପଣଙ୍କ ପିତୃବ୍ୟମାନଙ୍କ ଭସ୍ମ ଉପରେ ଯଦି କୌଣସି ପ୍ରକାରରେ ଗଙ୍ଗାଜଳ ପ୍ରବାହିତ ହୋଇ ପାରନ୍ତା ତେବେ ସେମାନେ ମୁକ୍ତି ପାଆନ୍ତେ ।"

ପୃଥିବୀ ଉପରେ ସ୍ୱର୍ଗନଦୀ ଗଙ୍ଗାଙ୍କୁ ଅବତରଣ କରାଇବା ସକାଶେ ଅଂଶୁମାନ ତପସ୍ୟା କଲେ । କିନ୍ତୁ ତପସ୍ୟା ପୂର୍ଣ୍ଣ ହେବା ପୂର୍ବରୁ ତାଙ୍କର ଦେହାନ୍ତ ହୋଇଗଲା ।

ତା'ପରେ ତାଙ୍କ ପୁତ୍ର ଦିଲ୍ଲୀପ ମଧ୍ୟ ସେହି ଦିଗରେ କିଛିଟା ପ୍ରଚେଷ୍ଟା କରିଥିଲେ କିନ୍ତୁ ସଫଳ ହୋଇ ନଥିଲେ । ଦିଲ୍ଲୀପଙ୍କ ପୁତ୍ର ଭଗୀରଥ ଗଙ୍ଗାଙ୍କୁ ଅବତରଣ କରାଇବା ସକାଶେ ଦୀର୍ଘକାଳ ଧରି ତପସ୍ୟା କଲେ । ଅବଶେଷରେ ଗଙ୍ଗାଦେବୀ ଭଗୀରଥଙ୍କୁ ଦର୍ଶନ ଦେଇ କହିଲେ, "ବତ୍ସ, ମୁଁ ତୁମ ତପସ୍ୟାରେ ସନ୍ତୁଷ୍ଟ । କ'ଣ ବର ମାଗୁଛ ମାଗ ।"

"ଦେବୀ, ମୋର ତପସ୍ୟାର ଏକମାତ୍ର ଲକ୍ଷ୍ୟ ହେଉଛି ଆପଣଙ୍କୁ ପୃଥିବୀ ପୃଷ୍ଠକୁ ଅବତରଣ କରାଇବା । ମୋର ପୂର୍ବପୁରୁଷ ସଗରପୁତ୍ରଗଣ କପିଳ ମୁନିଙ୍କ କ୍ରୋଧାଗ୍ନିରେ ଭସ୍ମୀଭୂତ ହୋଇଛନ୍ତି । ସେମାନଙ୍କର ସ୍ୱର୍ଗ-ପ୍ରାପ୍ତି ପାଇଁ ଆପଣଙ୍କ କୃପାହିଁ ଏକମାତ୍ର କାମ୍ୟ । ଦେବତାମାନେ କହିଲେ ଆପଣଙ୍କ ପବିତ୍ର ଜଳରାଶି ଥରେ ସେହି ଭସ୍ମରାଶି ଉପରେ



ପ୍ରବାହିତ ହେଲେ ସେମାନଙ୍କର ସ୍ୱର୍ଗପ୍ରାପ୍ତି ହେବ !" ଭଗୀରଥ କହିଲେ ।

ଗଙ୍ଗା କହିଲେ, ମୁଁ ସ୍ୱର୍ଗରୁ ଯେତେବେଳେ ପୃଥିବୀ ଉପରକୁ ଅବତରଣ କରିବି, ମୋର ବେଗ ଧାରଣ କରିବ କିଏ ? ମୋର ବେଗର ତୀବ୍ରତାରେ ପୃଥିବୀ ଫାଟିଯାଇ ମୁଁ ସିଧା ପାତାଳକୁ ଚାଲିଯିବି, ସେଥିପାଇଁ ତମେ କିଛି ବ୍ୟବସ୍ଥା କରିପାରିଲେ ମୁଁ ଅବତରଣ କରିବି ।"

"ଦେବୀ, ଆପଣ ଶିବଙ୍କ ମସ୍ତକ ଉପରେହିଁ ଅବତରଣ କରିବେ । ମୁଁ ଶିବଙ୍କୁ ସନ୍ତୁଷ୍ଟ କରି ଆପଣଙ୍କୁ ସମୟ କହିବି ।" ଭଗୀରଥ ଏଇ କଥା କହି ଶିବଙ୍କ ନିକଟକୁ ତପସ୍ୟା କରିବାକୁ ଗଲେ ।

କିଛିଦିନ ଉତ୍ତାରୁ ଶିବ ଭଗୀରଥଙ୍କୁ ଦର୍ଶନ ଦେଲେ । ଭଗୀରଥ ତାଙ୍କର ମନର ଇଚ୍ଛା ଶିବଙ୍କୁ କହିଲେ । ଶିବ ତାଙ୍କ କଥାରେ ସ୍ୱୀକୃତ ହେଲେ ।

ଶୁଭକ୍ଷଣରେ ଆକାଶରୁ ଅବତରଣ କଲେ ଦେବୀ ଗଙ୍ଗା । ଶିବଙ୍କ ଜଟା ଭିତରେ ମଧ୍ୟ ସେ କିଛିଦିନ ରହିଗଲେ ଓ ଯେତେବେଳେ ବାହାରିଲେ ସେ ସାତଟି ଧାରରେ ପ୍ରବାହିତ ହେଲେ । ତିନୋଟି ଧାର ପୂର୍ବକୁ, ତିନୋଟି ଧାର ପଶ୍ଚିମକୁ ଓ ଗୋଟିଏ ଧାର ଭଗୀରଥଙ୍କୁ ଅନୁସରଣ କରି ଚାଲିଲା । ସେମାନଙ୍କର ନାମ ମଧ୍ୟ ଭିନ୍ନ । ଯେଉଁ ଧାରଟି ଭଗୀରଥଙ୍କୁ ଅନୁସରଣ କଲା ତାହା ଅବଶେଷରେ ସଗର-ପୁତ୍ରମାନେ କରିଥିବା ମହାନ ଗର୍ତ୍ତକୁ ପୂର୍ଣ୍ଣ କରି ସେମାନଙ୍କ ଭସ୍ମରାଶି ଉପରେ ପ୍ରବାହିତ ହେଲା । ସେହି ଜଳପୂର୍ଣ୍ଣ ସ୍ଥାନକୁ ସଗର ରାଜାଙ୍କ ନାମ ଯୋଗୁ ସାଗର ବୋଲି କୁହାଯାଏ । ପୁଣ୍ୟମୟୀ ଗଙ୍ଗାଙ୍କ କୃପାରୁ ସଗରଙ୍କ ଷାଠିଏ ହଜାର ପୁତ୍ରଙ୍କର ସ୍ୱର୍ଗପ୍ରାପ୍ତି ହେଲା । ଭଗୀରଥଙ୍କ ଯୋଗୁ ଗଙ୍ଗା ଅବତରଣ କରିଥିଲେ ବୋଲି ତାଙ୍କର ଅନ୍ୟ ନାମ ଭାଗୀରଥୀ ।

ସ୍ୱାୟଂଭୁବ ମନୁଙ୍କ ସମୟରେ ଷାଠିଏ ବର୍ଷ ପର୍ଯ୍ୟନ୍ତ ବର୍ଷା ହୋଇ ନଥାଏ । ପୃଥିବୀ ମରୁଭୂମିରେ ପରିଣତ ହେଲା । ବ୍ରହ୍ମା ଚାହିଲେ ଜଣେ ଯୋଗ୍ୟ ବ୍ୟକ୍ତିକୁ ରାଜା କରାଇବେ ଯିଏ ପୃଥିବୀର ଦାୟିତ୍ୱ ନେବ । ମନୁ ବଂଶରେ



ରିପୁଞ୍ଜୟ ନାମକ ଏକ କ୍ଷତ୍ରିୟ କୁମାର ଥିଲେ । ତାଙ୍କର ସ୍ୱଭାବ ଚରିତ୍ର ଯେପରି ମହାନ୍, ତାଙ୍କର ତପସ୍ୟାଶକ୍ତି ମଧ୍ୟ ସେହିପରି ଉଚ୍ଚ ।

ବ୍ରହ୍ମା ରିପୁଞ୍ଜୟଙ୍କୁ ଦିବୋଦାସ ନାମ ଦେଇ ପୃଥିବୀର ରାଜା କରାଇଲେ । ସେ କାଶୀକୁ ରାଜଧାନୀ କରି ନିଜ ତପସ୍ୟା ବଳରେ ଓ ମହାନ୍ ଚରିତ୍ରର ବିଶୁଦ୍ଧତା ବଳରେ ଏକ ଚମତ୍କାର ରାଜ୍ୟ ସୃଷ୍ଟି କଲେ । ସେ ରାଜ୍ୟର ପ୍ରଜାମାନଙ୍କର ମଧ୍ୟ ଚରିତ୍ର ବଳ ଓ ଆଧ୍ୟାତ୍ମିକ ଶକ୍ତି ଏତେ ଥିଲା ଯେ ସେ ରାଜ୍ୟରେ ପାପ ଆଚରଣ ଆଦୌ ହେଉ ନଥିଲା ବା କୌଣସି ପ୍ରାକୃତିକ ବିପଦ ବା ଦୈବ ଦୁର୍ବିପାକ ଘଟୁ ନଥିଲା । ସମସ୍ତେ ଥିଲେ ବିଷ୍ଣୁଭକ୍ତ । କିନ୍ତୁ ଅନ୍ୟ ଦେବାଦେବୀଙ୍କୁ ମଧ୍ୟ ସେମାନେ ସମ୍ମାନ ଦେଖାଉଥିଲେ । କୌଣସି ଦୁଃଖ କଷ୍ଟ ନ ଥିବାରୁ ସେମାନେ ଅନ୍ୟାନ୍ୟ ଦେବତାଙ୍କ ପୂଜା ଛାଡ଼ିଦେଲେ । ତେଣୁ ଦେବତାମାନେ ଏକାଠି ହୋଇ ଯାଇ ଶିବଙ୍କ ପାଖରେ ପହଞ୍ଚିଲେ ।

ଶିବ କହିଲେ, "ଏକଥା ମୁଁ ଆଗରୁ ଜାଣିଛି । ବ୍ରହ୍ମା ବର ଦେବା ବେଳେ ଦିବୋଦାସ ରାଜ୍ୟଭାର ଗ୍ରହଣ କରିଥିଲେ କୌଣସି ଏକ ସର୍ତ୍ତରେ ଯାହାର ଫଳ ସ୍ୱରୂପ ଏପରି ହୋଇଛି । ଚାଲ ଆମେ ସବୁ ମନ୍ଦାର ପର୍ବତକୁ ଚାଲିଯିବା ।"

ଦିବୋଦାସ ଏହିପରି ଭାବରେ ବିନା ବାଧା ବିପଦରେ ଆଠ ହଜାର ବର୍ଷ ରାଜ୍ୟ ଶାସନ କଲେ । ଦିନେ ଦେବତାମାନେ ବୃହସ୍ପତିଙ୍କୁ ପଚାରିଲେ, "ଗୁରୁଦେବ, ଦିବୋଦାସ ଆମକୁ ମାନୁ ନାହିଁ । ତାକୁ ରାଜ୍ୟଚ୍ୟୁତ କରିବାର ଉପାୟ କିଛି ଅଛି ?"

"ହଁ ଅଛି । ତୁମମାନଙ୍କ ମଧ୍ୟରୁ ଅଗ୍ନି, ବାୟୁ ଓ ବରୁଣ ପୃଥିବୀରୁ ନିଜ ଶକ୍ତିକୁ ପ୍ରତ୍ୟାହାର କରି ଆଣିଲେ ସେମାନଙ୍କ ଜୀବନ ବିପନ୍ନ ହେବ ଓ ସେମାନେ ବାଧ୍ୟ ହୋଇ ଦେବତା ପୂଜା କରିବେ ।" ସେହିପରି କରା ହେଲା । କିନ୍ତୁ ପର ମୁହୂର୍ତ୍ତରେ ଦିବୋଦାସ ନିଜ ତପସ୍ୟା ଶକ୍ତି ବଳରେ ସବୁ ସୃଷ୍ଟି କଲେ ଓ ତାଙ୍କ ପ୍ରଜାମାନଙ୍କ ଜୀବନରେ କୌଣସି ବାଧା ତ୍ରୁଟି ଦେଖାଗଲା ନାହିଁ ।

କିନ୍ତୁ କାଶୀଧାମ ଛାଡ଼ି ଏତେଦିନ ବାହାରେ ରହିବାକୁ ଶିବଙ୍କୁ କିଛି ଭଲ ଲାଗୁ ନଥାଏ । ତେଣେ ସେ ଚୌଷଠି ଯୋଗିନୀଙ୍କୁ ଡାକି କହିଲେ, "ତମେ ସବୁ କାଶୀ ଯାଇ ସ୍ତ୍ରୀମାନଙ୍କ ପତିବ୍ରତା ଧର୍ମ ଓ ପୁରୁଷମାନଙ୍କ ସଦାଚରଣରେ ବିଘ୍ନ ଘଟାଅ ।"

ସିଦ୍ଧ ଯୋଗିନୀଗଣ ଶିବଙ୍କ ଆଦେଶ ପାଇ ଗଲେ ସିନା କିନ୍ତୁ ସେମାନଙ୍କର କିଛି କରି ପାରିଲେ ନାହିଁ ।

ତା'ପରେ ଶିବ ସୂର୍ଯ୍ୟଙ୍କୁ ଡାକି କହିଲେ, "ତମେ କାଶୀ ଯାଅ । ଛଦ୍ମବେଶରେ ରହି ଦିବୋଦାସର ଧର୍ମଚ୍ୟୁତ ଘଟାଇବ ।"

ସୂର୍ଯ୍ୟ ଅନେକ ପ୍ରକାର ଛଦ୍ମବେଶ ନେଇ କାଶୀରେ ଘୂରିଲେ । ଦିବୋଦାସ ବା ତାଙ୍କ ପ୍ରଜାଙ୍କର କୌଣସି ଅସଦାଚରଣ ସେ ଦେଖିବାକୁ ପାଇଲେ ନାହିଁ । ତେଣୁ କାର୍ଯ୍ୟ ସଫଳ ହୋଇ ନ ପାରିବାରୁ ସେ କାଶୀରେ ରହିଗଲେ ।

କିଛିଦିନ ଭିତରୁ ସୂର୍ଯ୍ୟ ନ ଫେରିବାରୁ ବ୍ରହ୍ମାଙ୍କୁ ଡାକି ଶିବ କହିଲେ, "ମୁଁ ସୂର୍ଯ୍ୟଙ୍କୁ ପଠାଇଥିଲି ଦିବୋଦାସର ଧର୍ମଚ୍ୟୁତ କରାଇବାକୁ । ସେ ଫେରିଲେ ନାହିଁ । ଆପଣ ତ ବର ଦେଇଛନ୍ତି ଯାଇ ଟିକିଏ ଦେଖନ୍ତୁ ତ ।"

ବ୍ରହ୍ମା ଶିବଙ୍କ କଥା ସ୍ୱୀକାର କରି ଏକ ବୃଦ୍ଧ ବ୍ରାହ୍ମଣ ରୂପରେ ଯାଇଁ ଦିବୋଦାସଙ୍କ ପାଖରେ ପହଞ୍ଚିଲେ । ସେ ଦିବୋଦାସଙ୍କୁ କହିଲେ "ମୁଁ ଆପଣଙ୍କର ମଙ୍ଗଳ ପାଇଁ ଏକ ଯଜ୍ଞ କରିବି । କାଶୀ ହେଉଛି ବିଶ୍ୱନାଥ ଶିବଙ୍କ ଆସ୍ଥାନ । ତାଙ୍କ ବିନା ଏ ସ୍ଥାନ ଅସୁନ୍ଦର ଦିଶୁଛି । ଆପଣ ଅନୁମତି ଦେଲେ ମୁଁ ତାଙ୍କୁ ଏଠାକୁ ନେଇ ଆସିବି ଓ ଯଜ୍ଞ ଭଲରେ ସମ୍ପନ୍ନ ହେବ ।"

ଦିବୋଦାସ ଏକଥା ଶୁଣି ଚୁପ୍ ରହିଲେ । ତା'ପରେ ବ୍ରହ୍ମା ସେଠାରେ ରହି ଦଶଟି ଅଶ୍ୱମେଧ ଯଜ୍ଞ କରାଇଲେ ଓ ସ୍ୱୟଂ ସେଠାରେ ରହିଗଲେ ।





# ଶରୀରର ମୂଲ୍ୟ

ଉଦୟଗିରିର ରାଜା ଉଦୟସେନ୍ ଥିଲେ ଜଣେ ଧର୍ମାତ୍ମା ପୁରୁଷ । ସେ ତାଙ୍କର ପ୍ରଜାମାନଙ୍କର ଜୀବିକା ନିର୍ବାହ ପାଇଁ ନାନା ପ୍ରକାର ବ୍ୟବସ୍ଥା କରିଥିଲେ । ତେଣୁ ରାଜ୍ୟରେ ଦାରିଦ୍ର୍ୟ ଆଦୌ ନଥିଲା । କଦବା କ୍ୱଚିତ୍ ବୁଢ଼ା ବା ବିକଳାଙ୍ଗ ଭିକ ମାଗିବାର ଦେଖା ଯାଇଥାଏ ।

ସେଇ ରାଜ୍ୟରେ ଶୀତଳ ନାମକ ଏକ ସ୍ୱାସ୍ଥ୍ୟବାନ୍ ଯୁବକ ଥାଏ । ସେ ବହୁତ ଅଳସୁଆ । ସେ ନିଜେ କିଛି କାମ ନକରି ମା' ବାପଙ୍କ ଉପରେ ନିର୍ଭର କରି ଚଳୁଥାଏ । ମା' ବାପ ମରିଯିବା ପରେ ଭିକ ମାଗିଲା । ଜଣେ ସ୍ୱାସ୍ଥ୍ୟବାନ୍ ଲୋକକୁ ଭିକ ବା ଦେଉଛି କିଏ ? ଦିନେ ସକାଳୁ ଉଠି ସେ ଯାଇ ଗୋଟିଏ ଗଛମୂଳରେ ବସି ଚିତ୍କାର କରି ଭିକ ମାଗୁଥାଏ । କେହି ଶୁଣୁ ନଥା'ନ୍ତି । ଆଗରୁ ପେଟ ଖାଲି ଥିଲା; ପୁଣି ଚିତ୍କାର କରି କରି ଆହୁରି କ୍ଳାନ୍ତ ହୋଇ ପଡ଼ିଲା । ସେ ବହୁତ ରାଗି ଗଲା । ତା'ପରେ ଭାବିଲା ଭଗବାନଙ୍କୁ ଡ଼ାକିଲେ ନିଶ୍ଚୟ କିଛି ଫଳ ହେବ ।

ତା'ପରେ ଲୋକଙ୍କୁ ନଡ଼ାକି ଭଗବାନ୍‌ଙ୍କ ନାମ ଧରି ଚିତ୍କାର କରି କହିଲା, "ହେ ଭଗବାନ୍, ଗରିବକୁ ଭିକ ଦିଅ ।"

ତଥାପି କିଛି ଫଳ ହେଲା ନାହିଁ । ତା'ପରେ ଭଗବାନ୍‌ଙ୍କ ଉପରେ ତା'ର ବହୁତ କ୍ରୋଧ ହେଲା । ସେ ଭଗବାନ୍‌ଙ୍କୁ ଗାଳି ଦେଇ କହିଲା, "ଆରେ ଭଗବାନ୍, ତୁ କେଉଁଠି ମରିଗଲୁ ନା' କ'ଣ ? ତୋ କାନ କାଲା ହୋଇ ଯାଇଛି ନା କ'ଣ ? ଲୋକ କୁହନ୍ତି ଯିଏ ଜନ୍ମ ଦିଏ ସେ ଖାଦ୍ୟର ମଧ୍ୟ ବ୍ୟବସ୍ଥା କରିଥାଏ । ତୁ ତ ମୋତେ ଜନ୍ମ ଦେଇଛୁ । କିନ୍ତୁ ଖାଦ୍ୟର ବ୍ୟବସ୍ଥା କରିବା ବେଳକୁ ପଳେଇ ଯାଇଛୁ କୁଆଡେ ? ଠକ କେଉଁଠିକାର ।"

ପଚିଶବର୍ଷ ତଳର 'ଚନ୍ଦାମାମ'ରୁ ଗୃହୀତ

ଠିକ୍ ସେହି ସମୟରେ ରାଜା ଉଦୟସେନ ସେହି ରାସ୍ତାରେ ଘୋଡ଼ାରେ ବସି ଯାଉଥା'ନ୍ତି । ସେ ଶୀତଳର ଚିତ୍କାର ଶୁଣି ଘୋଡ଼ାରୁ ଓହ୍ଲାଇ ପଚାରିଲେ, "ଆରେ, ତୁ କାହାକୁ ଏମିତି ଗାଳି ଦେଉଛୁ ?"

"ଆଉ କାହାକୁ ? ସେହି ପାପୀ ଭଗବାନଙ୍କୁ ।" ଶୀତଳ କହିଲା ।

"ଭଗବାନ୍‌ଙ୍କୁ ଯିଏ ପୂଜା କରନ୍ତି, ନିନ୍ଦା କିଏ କରେ ?" ରାଜା ପଚାରିଲେ ।

"କାହିଁକି ନୁହେଁ ? ସକାଳୁ ଉପାସ । ଡାକି ଡାକି କେହି ଭିକ ଦେଉ ନାହାନ୍ତି ।" ଶୀତଳ କହିଲା ।

"ଓଃ ତୋର ଖାଦ୍ୟ ଦରକାର ? ତେବେ ମୋତେ କହ ମୁଁ ଦେବି । ମୁଁ ଏ ଦେଶର ରାଜା । କିନ୍ତୁ ଶୁଣ, ତୁ ମତେ ଯଦି ତୋର ହାତଟିଏ କାଟି ଦେଇଦେବୁ ତେବେ ତତେ ମୁଁ ହଜାର ଟଙ୍କା ଦେବି । ଯଦି ଗୋଡ଼ଟିଏ କାଟି ଦେବୁ ତେବେ ଦୁଇହଜାର ଟଙ୍କା ଦେବି । ଆଉ ଯଦି ଆଖିଟିଏ ଖୋଳି ଦେଇଦେବୁ ତେବେ ତ ପାଞ୍ଚହଜାର ଟଙ୍କା ପାଇବୁ ।" ରାଜା କହିଲେ ।

"ଆପଣଙ୍କ ଧନ ମୋର ଦରକାର ନାହିଁ । ମୁଁ କୌଣସି ଅଙ୍ଗ ବି ଦେବନାହିଁ ।" ଶୀତଳ କହିଲା ।

"ତା' ମାନେ ତୁ ତ ବହୁତ ଧନ୍ୟବାନ୍ । ତୋ ପାଖରେ ଆଠ ହଜାର ଟଙ୍କାର ହାତ ଗୋଡ଼ ଓ ଆଖି ଅଛି ? ଭଗବାନ୍ ତୋତେ ଏତେ ମୂଲ୍ୟବାନ୍ ସମ୍ପତ୍ତି ଦେଇଛନ୍ତି ଆଉ ତୁ ତାଙ୍କର ନିନ୍ଦା କରୁଛୁ ? ମୂର୍ଖ ! ଯା ଆଜିଠାରୁ ଆଉ ଭିକ ନ ମାଗି ନିଜର ହାତ ଗୋଡ଼ର ଉପଯୋଗ କରି ଜୀବିକା ନିର୍ବାହ କର । ନେ ଆଜି ମୁଁ ତୋତେ କିଛି ଟଙ୍କା ଦେଉଛି ସେତକ ଖର୍ଚ୍ଚ କରି ଜୀବିକାର୍ଜ୍ଜନର ଉପାୟ କର ।" ଏତକ କହି ରାଜା ତା' ହାତରେ କିଛି ଟଙ୍କା ଦେଇ ପୁଣି ଘୋଡ଼ା ଛୁଟାଇ ଚାଲିଗଲେ ।

ସେହିଦିନଠୁ ଶୀତଳ ଭିକମଗା ଛାଡ଼ି ବ୍ୟବସାୟ କରି ପେଟ ପୋଷିଲା ।





# ବାମନର କରାମତି

ବିଜୟ ଆପାତତଃ ଶ୍ରୀପୁର ଗ୍ରାମର ସବୁଠାରୁ ସୁଖୀ ଯୁବକ ଥିଲା ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ଅବଶ୍ୟ ତା'ର ବିଶେଷ ସମ୍ପତ୍ତିବାଡ଼ି ନଥିଲା । କିନ୍ତୁ ସେଥିରେ କ'ଣ ଯାଏ ଆସେ ? ସେ ନୂଆ କରି ଜମିଦାରଙ୍କ କଚେରିରେ ଗୋଟିଏ ଚାକିରି ପାଇଥିଲା । ସେତିକି ନୁହେଁ, ଗାଁର ମୁଖିଆ ମୁକୁନ୍ଦବାବୁଙ୍କ ଏକମାତ୍ର କନ୍ୟା ସୁମିତା ସହ ତା' ବିବାହ ଠିକ୍ ହୋଇ ସାରିଥିଲା । ବିଜୟର ବାପା ମା' ନଥିଲେ । ସୁମିତା ଆସି ତା' ଘର ଉଜ୍ଜ୍ୱଳ କରିବ, ଏଇଆ ଥିଲା ତା'ର ସ୍ୱପ୍ନ । ସୁମିତା ଭଳି ଝିଅ ଲକ୍ଷେରେ ଗୋଟିଏ ମିଳିବେ ସିନା !

ସେଦିନ ସେ କଚେରିରୁ ଫେରି ଲୁଗାପଟା ବଦଳାଉଛି, ସୁମିତା ଘରର ଚାକରାଣୀ ଆସି ତାକୁ ଗୋପନରେ କହିଲା, "ଦେଈ ମନ୍ଦିର ପାଖରେ ତମକୁ ଅପେକ୍ଷା କରୁଛନ୍ତି ।"

ବିଜୟର ପୁଲକ କହିଲେ ନ ସରେ । ସେ ଏକା ନିଃଶ୍ୱାସରେ ଯାଇ ଠିକଣା ଥାନରେ ପହଞ୍ଚିଗଲା । ସୁମିତା ମନ୍ଦିର ପାଖରୁ ଟିକିଏ ଦୂରରେ ଗୋଟିଏ ନିର୍ଜନ ସ୍ଥାନରେ ବିଜୟକୁ ଅପେକ୍ଷା କରିଥାଏ । ସେତେବେଳକୁ ଗୋଧୂଳି ସମୟ । ବିଜୟ ସୁମିତାର ମୁହଁ ଭଲ ଭାବରେ ଲକ୍ଷ୍ୟ କରି ନଥାଏ । ସୁମିତାକୁ ଦେଖିବା ମାତ୍ରେ ସେ ପଚାରିଲା, "ସୁମିତା, କ'ଣ ଆମ ନିର୍ବନ୍ଧର ତାରିଖ ଠିକ୍ ହୋଇଗଲା କି ?"

"ହଁ, ହୋଇଗଲା ଯେ, କିନ୍ତୁ ତମ ସାଥିରେ ନୁହେଁ !"

ସୁମିତାର କଣ୍ଠସ୍ୱର ଶୁଣି ବିଜୟ ଚମକି ପଡ଼ିଲା । ସେତେବେଳକୁ ଯାଇ ସେ ଭଲ କରି ସୁମିତା'ର ମୁହଁକୁ ଅନାଇଲା । ସୁମିତା କାନ୍ଦୁଥିଲା ।

ସୁରେନ୍ଦ୍ର



ବିଜୟର ବିସ୍ମୟର ସୀମା ରହିଲା ନାହିଁ । ପ୍ରଥମେ ତା' ମୁହଁରେ କିଛି କଥା ମଧ୍ୟ ଫୁଟିଲା ନାହିଁ । ସେ କିଛି ସମୟ ପର୍ଯ୍ୟନ୍ତ ବଲ ବଲ ଅନାଇ ରହି ଧୀର କଣ୍ଠରେ ପଚାରିଲା, "କଥା କ'ଣ ମୋତେ ଟିକିଏ ସ୍ପଷ୍ଟ ଭାବରେ କହିଲ !"

"ଶୁଣ । ଆମ ଘରକୁ ଗତକାଲି ବାପାଙ୍କର ଜଣେ ବାଲ୍ୟ ବନ୍ଧୁ ଆସିଥିଲେ । ବହୁଦିନ ପରେ ବାପାଙ୍କ ସହ ତାଙ୍କର ଭେଟ ହେଲା । ସେ ଭଦ୍ରଲୋକଙ୍କର ପୁଅ ବିଭା ହେବାକୁ ତରବର ହେଉଛି । ତାହାରି ସହ ମୋର ବିବାହ ଦେବାକୁ ବାପା ସ୍ଥିର କରିଛନ୍ତି । ସେ ବରପାଦ ଖ୍ଷ ଲୋକର ଗୋଟିଏ ବୋଲି ପୁଅ । ବାପାର ସବୁ ସମ୍ପତ୍ତି ସେ ପାଇବ । ସେମାନେ ବହୁତ ଧନୀ । ତେଣୁ ତମଭଳି ସାଧାରଣ ତରୁଣୀକୁ କିଏ ପଚାରେ ! ଆଗାମୀ କାଲି ଉପରଓଳି ନିର୍ବନ୍ଧ !"

ବିଜୟ ଆଶ୍ଚର୍ଯ୍ୟ ହୋଇ କହିଲା, "କିନ୍ତୁ ଏହା କିପରି ସମ୍ଭବ ? ସେ ତ ମୋ ବାପାକୁ ଆମ ବିବାହ ପାଇଁ କଥା ଦେଇ ସାରିଥିଲେ !"

"ଦେଇ ସାରିଥିଲେ ଯେ, କିନ୍ତୁ ବର୍ତ୍ତମାନ ଭାବୁଛନ୍ତି ମୁଁ ସେଠି ବିଭା ହେଲେ ଅଧିକ ସୁଖୀ ହେବି । କାରଣ ସେମାନଙ୍କର ବେଶି ଟଙ୍କା ଅଛି ।" ସୁମିତ୍ରା ଆଖିରୁ ଲୁହ ପୋଛି କହିଲା ।

"ତା'ହେଲେ ?" ବିଜୟ ଆଉ କିଛି କହିଲା ଭଳି ଭାଷା ପାଇଲା ନାହିଁ ।

"ତା'ହେଲେ ଆଉ କ'ଣ ?" ଏହା କହି ସୁମିତ୍ରା କାନ୍ଦି କାନ୍ଦି ଚାଲିଗଲା ।

ବିଜୟ ବି ସେଠାରୁ ଚାଲିଗଲା । ଅନ୍ୟମନସ୍କ ଭାବରେ ସେ କେତେବେଳେ ବଣରେ ପଶିଲାଣି, କେତେବେଳେ ରାତି ଘୋଟି ଆସିଲାଣି, ସେସବୁ ବୁଝିପାରୁ ନଥାଏ । ହଠାତ୍ ସେ ଶୁଣିଲା କାହାର ଧମକ : "ହଇରେ ଟୋକା ! ତୋ ସାହସ ତ କମ୍ ନୁହେଁ ? ଏ ମୁଲକ ଭିତରକୁ ମାଡ଼ି ଚାଲିଛୁ କେଉଁ ସାହସରେ ? ଏହା ଆମ ବାମନ ଗୋସେଇଁଙ୍କ ଆସ୍ଥାନ ବୋଲି ଜାଣିନାହୁଁ ?"

ବାମନ ଗୋସେଇଁ ? ବିଜୟ ଚମକି ପଡ଼ିଲା । ବାମନ ଗୋସେଇଁ ଭିଲ୍ ମାନଙ୍କ ଗୁରୁ ।

ସେ କେବେ ବଣରୁ ବାହାରେ ନାହିଁ । ତା'ର ଅଦ୍ଭୁତ ଶକ୍ତି ଅଛି ବୋଲି ଲୋକେ କହନ୍ତି । ସେ ତାହାର ଉପରେ ରାଗିଗଲେ ତା'ର ସର୍ବନାଶ କରିପାରେ !

ତା'କୁ ଧମକ ଦେଉଥିବା ଦୁଇ ଭିଲ୍ ଯୁବକଙ୍କୁ ସେ କହିଲା, "ଭାଇ ! ପ୍ରାଣକୁ ମୋର ଡର ନାହିଁ । ମୋତେ ଯେଉଁ ଦଣ୍ଡ ଦେବ ଦିଅ ।"

"ତୋର ଯେ ପ୍ରାଣକୁ ଡର ନାହିଁ, ସେକଥା ଆମେ ଜାଣୁ । ନହେଲେ ସେ ଗଛ ଡ଼ାଳରେ ବସି ଗୋଡ଼ ଲମ୍ବାଇ ଥିବା ଭୂତର ଧମକରେ ମୂର୍ଚ୍ଛା ନ ଯାଇ ଏତେଦୂର ଆସିଥାନ୍ତୁ କିପରି ? ସେ ଭୂତ ବାମନ ଗୋସେଇଁଙ୍କ ଜଗୁଆଳ ।"

ବିଜୟ ଆଖି ବଡ଼ ବଡ଼ କରି ସେ ଯୁବକ ଦୁଇଜଣ ଯେଉଁ ଗଛକୁ ନିର୍ଦ୍ଦେଶ କଲେ, ସେ ଗଛଆଡ଼େ ଆଖି ପକାଇଲା । ଜୋର ପବନରେ ସେ ଗଛଡାଳ ଦୋହଲୁଥାଏ ।

"ବାସ୍ତବିକ୍, ଭୂତକୁ ଦେଖି ମଧ୍ୟ ଭୟ ନକରି ସିଧା ସିଧା ତାକୁ ଅତିକ୍ରମ କରି ଆସିବା ଭଳି ଲୋକ ଆଜିପର୍ଯ୍ୟନ୍ତ ଆମେ ଆଗରୁ ଦେଖି ନଥିଲୁଁ । ତୋତେ ସାବାସ୍ ଦେବା କଥା !" ଭିଲ୍ ଯୁବକ ଦୁଇଜଣ କହିଲେ ।

ବିଜୟ ଯେ କେତେବେଳେ ସେ ଭୂତ କଡ଼ଦେଇ ଆସିଛି, ସେକଥା ସେ ବୁଝିପାରି ନଥିଲା । ସେ ଆଶ୍ଚର୍ଯ୍ୟ ହୋଇ ଏଣେ ତେଣେ ଅନାଇଲା ।





"ସେ ଲୁଚକୁ ଯିଏ ଅତନମ କରି ଆସେ, ତାକୁ ଗୋସେଇଁ ଦେଖା ଦିଅନ୍ତି । ଚାଲ ତାଙ୍କ ପାଖକୁ ।" ଯୁବକ ଦୁଇଜଣ ଏହା କହି ବଜ୍ରସ୍ୱକୁ ସାଥିରେ ନେଇଗଲେ ଓ ଅଳ୍ପ ଦୂରରୁ ବାମନ ଗୋସେଇଁର କୁଡ଼ିଆ ଦେଖାଇ ଦେଲେ ।

ବଜ୍ରସ୍ୱ ଇତସ୍ତତଃ କଲା । ଯୁବକ ଦୁଇଜଣ ତାକୁ ଆଗକୁ ଠେଲି ଦେଇ କହିଲେ, "କରେ, ଯଦି ଏତେ ସାହସ ଦେଖାଇ ଏ ପଟକୁ ମାଡ଼ି ଆସିଲୁ, ବର୍ତ୍ତମାନ ଏଠି ରହିଗଲୁ କାହିଁକି ? ଯା, ଆଗକୁ ଯା ।"

"ତମେମାନେ ମୋ ସାଙ୍ଗରେ ଚାଲ !" ବଜ୍ରସ୍ୱ କହିଲା ।

"ନା, କାମ ନଥିଲେ ଆମେ ତାଙ୍କ ପାଖକୁ ଯାଉଁ ନା । ତୁ ଯା ।" ଯୁବକ ଦୁଇଜଣ ତାକୁ ପୁଣି ଥରେ ଠେଲି ଦେଲେ ।

ବଜ୍ରସ୍ୱ ଅଗ୍ରସର ହେଲା ।

ନିଆଁ ଜଳୁଥିଲା । ତା' ପଛରୁ ବାହାରି ପଡ଼ି ବାମନ ଗୋସେଇଁ ପଚାରିଲା, "କରେ ? କୁଆଡ଼େ ଆସିଲୁ ?"

"ଗୋସେଇଁ ! ମୋତେ ଓ ସୁମିତାକୁ ବଞ୍ଚାନ୍ତୁ ।" ଏହା କହି ସେ ସବୁ ଗପିଗଲା ।

ବାମନ ଗୋସେଇଁ ମନଦେଇ ସବୁ ଶୁଣିଲା । ତା'ପରେ କରୁ ଖତେଇ ହେଲା ଭଳି ଭଙ୍ଗୀରେ କହିଲା, "ସୁମିତାକୁ ତୁ ବାହା ନହେଲେ କାହାର କ'ଣ ହୋଇଯିବ ? ଚଲ ।"

"ଗୋସେଇଁ ! ଆଉ କାହାର କିଛି ହେବ ନାହିଁ, ମୋର ଓ ସୁମିତାର ଦୁଃଖର ସୀମା ରହିବ ନାହିଁ ।" ବଜ୍ରସ୍ୱ କହିଲା ।

"ଯାଃ, ଯାଃ ! ସୁମିତା ଦେଖିବାକୁ ସୁନ୍ଦର ହୋଇ ନଥିଲେ କ'ଣ ତୁ ତାହାକୁ ବାହା ହୁଅନ୍ତୁ ?" ବାମନ ଗୋସେଇଁ ଧମକ ଦେଲା ।

"ହଁ, ଗୋସେଇଁ । ମୁଁ ଜରୁର୍ ତାକୁ ବାହା ହୁଅନ୍ତି !" ବଜ୍ରସ୍ୱ ଦୃଢ଼ କଣ୍ଠରେ ଉତ୍ତର ଦେଲା ।

ନିଆଁ ଭିତରେ ହାତ ଭର୍ତ୍ତି କରି ବାମନ ଗୋସେଇଁ ଖଣ୍ଡାଏ ଅଙ୍ଗାର ଉଠାଇ ଆଣି ବଜ୍ରସ୍ୱକୁ ଧରାଇ ଦେଲା । ଆଶ୍ଚର୍ଯ୍ୟର କଥା, ବଜ୍ରସ୍ୱକୁ ତାହା ମୋଟେ ଗରମ ଲାଗିଲା ନାହିଁ ।

"ଯା, ଏହାକୁ ନେଇ ସୁମିତାକୁ ଖୁଆଇ ଦେ। ତେଣିକି ଦେଖିବା। ଚାଲ, ଚାଲ !" କର୍କଶ କଣ୍ଠରେ ବାମନ ଗୋସେଇଁ କହିଲା।

ଚାଲିବା ପାଇଁ ବିଜୟକୁ କହିବା ଲୋଡ଼ା ନଥିଲା। ସେ ଦୌଡ଼ିଲା। ଭୂତ ବସିଥିବା ଗଛଆଡ଼େ ଥରେ ବି ଅନାଇଲା ନାହିଁ।

ଜହ୍ନ ଆଲୁଅ ହୋଇଥାଏ। ସେ ଯାଇ ସିଧା ପହଞ୍ଚିଲା ସୁମିତାର ଝରକା ପାଖରେ। ଡାକିଲା ଧିରେ ଧିରେ, "ସୁମିତା!"

ନିଦରେ ବି ସୁମିତା ଧକେଇ ହେଉଥିଲା। "ଶୁଣ, ସୁମିତା। ଏ ଚକଟି ଖାଇଦିଅ। ଭବିଷ୍ୟରେ କ'ଣ ଅଛି ଦେଖାଯିବ। ଏହା କ'ଣ ପଚାରୁ ନାହିଁ।" ବିଜୟ କହିଲା।

"ପଚାରିବ କାହିଁକି? ବିଷ ହୋଇଥିଲେ ବି ଆପତ୍ତି ନାହିଁ।" ଏହା କହି ସୁମିତା ଅଙ୍ଗାର ଚୋବାଇ ଦେଲା।

ପରଦିନ ନିର୍ବନ୍ଧ ପାଇଁ ଭଦ୍ରଲୋକ ସାଙ୍ଗରେ ବରପାତ୍ର ବି ଆସିଲେ। ସୁମିତାକୁ ଦେଖି ବରପାତ୍ର ମୁହଁ ବୁଲାଇ ନେଲେ।

ସୁମିତାର ବାପା ମାଙ୍କର ବି ବିସ୍ମୟର ସୀମା ରହିଲା ନାହିଁ। ରାତାରାତି ସୁମିତା'କୁ କି ବେମାର ଧରିଲା? ସେ ଦିଶୁଥାଏ ଅଙ୍ଗାର ଭଳି। ଚେହେରା ବି ପୁରା ବଦଳି ଯାଇଥାଏ।

"ବାପା! ତମ ରୁଚିବୋଧ ତ ବେଶ୍ ଭଲ!" ଥଟ୍ଟା କରି ବରପାତ୍ର କହିଲା।



ଭଦ୍ରଲୋକ ରାଗିଯାଇ ମୁକୁନ୍ଦବାବୁଙ୍କୁ କହିଲେ, ତମେ କାଲି ଅନ୍ୟ ଝିଅକୁ ଦେଖାଇ ଆଜି ଏ ଅସୁନ୍ଦରୀକୁ ଦେଖାଇବାର ମତଲବ କ'ଣ?"

ସେମାନେ ପାଣି ମୁନ୍ଦାଏ ବି ସ୍ପର୍ଶ ନକରି ଚାଲିଗଲେ।

"ହାୟ, ହାୟ, ମୋ ଝିଅର ହେବ କ'ଣ?" ପାଗଳ ଭଳି ପାଟି କରି କହିଲେ ମୁକୁନ୍ଦବାବୁ।

"ଆଜ୍ଞା, ମୁଁ ତେବେ କ'ଣ ପାଇଁ ଅଛି?" ଆଗଭର ହୋଇ ବିଜୟ ଘୋଷଣା କଲା।

"ବିଜୟ! ତମ ପ୍ରତି ମୁଁ ଅନ୍ୟାୟ କରିଛି। ତମେ ମୋତେ କ୍ଷମା କରିପାରିବ? ମୋ

ହିଅକୁ ତା'ର ଏହି ରୂପରେ ଗ୍ରହଣ କରି ପାରିବ ?" ବ୍ୟାକୁଳ ଭାବରେ ମୁଁ ଲୁନ୍ଦାବାରୁ ପଚାରିଲେ ।

"ଆଜ୍ଞା, ସୁମିତାକୁ ମୁଁ ଭଲ ପାଏଁ ତା' ସ୍ୱଭାବ ଯୋଗୁଁ ।" ବିଜୟ ଉତ୍ତର ଦେଲା ।

ବିଜୟ ସହ ସୁମିତାର ନିର୍ବନ୍ଧ ଭଲଭାବେ ହୋଇଗଲା ।

ରାତିରେ ବିଜୟ ଯାଇ ପୁଣି ପହଞ୍ଚିଲା ବାମନ ଗୋସେଇଁ ପାଖରେ ।

"କିରେ ଟୋକା, ପୁଣି ଲୁଆଡ଼େ ଆସିଗଲୁ ?"

"ଗୋସେଇଁ ! ସୁମିତାର ଚେହେରା···"

"ଗ୍ରେଟ୍ ! ତୁ ତାକୁ ଭଲ ପାଉ ପରା ? ଚେହେରାକୁ ଧୋଇ ପାଣି ପିଇବୁ ? ଗୁଣର ଆଦର କରି ଶିଖିନାହୁଁ ? ସେ ସେମିତି ରହିବ ।"

"ଗୋସେଇଁ, ସୁମିତା କହୁଛି ମୋ ପାଖରେ ଠିଆ ହେବାକୁ ତାକୁ ଲାଜ ଲାଗୁଛି । ଆପଣ ମୋତେ ଖଣ୍ଡିଏ ଅଙ୍ଗାର ଦିଅନ୍ତୁ । ମୁଁ ବି କୁରୂପ ହୋଇଯାଏଁ । ତା'ହେଲେ ଦୁହେଁ ଦୁହିଙ୍କୁ ମାନିବୁଁ ।" ବିଜୟ କହିଲା ।

"ଓଃ, ତୁ ମନେ ମନେ ଭାରି ସୁନ୍ଦର ପରା । ହଉ, ନେଇ ଯା ଏ ଫଳ । ସେ ଝିଅ ଖାଇ ଦେଉ ।" ବାମନ ଗୋସେଇଁ ଫଳଟିଏ ବଢ଼ାଇ ଦେଲା ।

ବିଜୟ ଫଳ ଧରି ଦୌଡ଼ିଲା ଓ ସୁମିତାକୁ ସେ ଫଳଟି ଖାଇବାକୁ ଦେଲା । ସୁମିତା ପୁରା ଫଳ ଖାଇ ନସାରୁଣୁ ତା' ଚେହେରା ପୁଣି ବଦଳି ଗଲା । ପୂର୍ବଠୁଁ ସେ ଆହୁରି ଭଲ ଦିଶିଲା ।

ବାହାଘର ହୋଇଗଲା ଜାକଜମକରେ । ପରେ ଥରେ ଦୁଇଥର ବିଜୟ ସେ ବଣ ଭିତରକୁ ଯାଇ ବାମନ ଗୋସେଇଁଙ୍କୁ ଭେଟିବାକୁ ବହୁତ ଚେଷ୍ଟା କଲା—ଧନ୍ୟବାଦ ଦେବାପାଇଁ । କିନ୍ତୁ ସେ ଭୂତକୁ ଦେଖି ଡରି ପଳାଇ ଆସେ ।



# ଶକ୍ତ କୋଠା

ରାଜା ସମୁଦ୍ରଦେବ ତାଙ୍କ ପୁଅକୁ ଋଷି ଶ୍ରୀକରଙ୍କ ଗୁରୁକୁଳରେ ବିଦ୍ୟାଧ୍ୟୟନ ପାଇଁ ଛାଡ଼ିଥାନ୍ତି । ଥରେ ରାଜା ଗୁରୁକୁଳକୁ ଗଲେ । ସକାଳେ ଋଷିଙ୍କ ସହ ଗପ କରି ବୁଲି ବୁଲି ପଚାରିଲେ, "ମହାଶୟ, ମୋ ପୁଅ ଆଉ କେତେଦିନ ଗୁରୁକୁଳରେ ରହିଲେ ତା'ର ଅଧ୍ୟୟନ ସମାପ୍ତ ହେବ ?"

"ମହାରାଜ ! ଆଉ ଦୁଇ ବର୍ଷ ଲାଗିବ ।" ଋଷି କହିଲେ ।

"ଆହୁରି ଦୁଇ ବର୍ଷ ? ଆପଣ ଆଉ ଛଅ ମାସରେ ଶେଷ କରି ଦିଅନ୍ତୁ ।" ରାଜା କହିଲେ ।

ଋଷି ଅଦୂରରେ ନିର୍ମାଣ ହେଉଥିବା ଗୋଟିଏ କୋଠା ଆଡ଼କୁ ହାତ ଦେଖାଇ ପଚାରିଲେ, "ମହାରାଜ ! ଆପଣଙ୍କ ନିର୍ଦ୍ଦେଶରେ ନିର୍ମାଣ ହେଉଥିବା ଏ କୋଠା କେତେ ଦିନରେ ସମାପ୍ତ ହେବ ?"

"ତିନିବର୍ଷ ଲାଗିଯିବ ।" ରାଜା କହିଲେ ।

"ମହାରାଜ, ଆପଣ ଯଦି ଗୋଟିଏ କୁଡ଼ିଆ ବନାଇବେ, ତେବେ ତ ଦିନକରେ କାମ ହୋଇଯିବ !" ଋଷି କହିଲେ ।

ରାଜା ଚୁପ୍ ରହିଲେ । ତା'ପରେ ସ୍ମିତ ହସ ସହକାରେ କହିଲେ, "ମହାଶୟ ! ଆପଣ ମୋତେ ଭଲ ମଜବୁତ ଘରଟିଏ ଦିଅନ୍ତୁ; କୁଡ଼ିଆ ଲୋଡ଼ା ନାହିଁ । ପୁଅ ଆପଣଙ୍କଠି ଆଉ ଦୁଇବର୍ଷ ରହୁ ।"





# ଚାଣକ୍ୟ କଥା

(ପୂର୍ବ ପ୍ରକାଶିତ ପରେ ଅବଶିଷ୍ଟାଂଶ)

ଚାଣକ୍ୟ ଓ ଚନ୍ଦ୍ରଗୁପ୍ତ ନନ୍ଦଙ୍କ ରାଜ୍ୟ ଅଧିକାର କଲେ । ପୂର୍ବ ସର୍ତ୍ତ ଅନୁସାରେ ରାଜା ପର୍ବତକ ଓ ଚନ୍ଦ୍ରଗୁପ୍ତଙ୍କ ମଧ୍ୟରେ ରାଜ୍ୟ ଓ ଧନସମ୍ପତ୍ତି ବଣ୍ଟା ହେବା କଥା ।

ନନ୍ଦଙ୍କ ରାଜନବରରେ ଥାଏ ଗୋଟିଏ ସୁନ୍ଦରୀ ବିଷକନ୍ୟା । ପର୍ବତକ ତାକୁ ନିଜ ପାଖରେ ରଖିଲେ । ପରେ ତାକୁହିଁ ସେ ବିବାହ କଲେ । ବିବାହ ସମୟରେ ବିଷକନ୍ୟାର ହାତରେ ଥିବା ବିଷାକ୍ତ ଝାଳ ପର୍ବତକଙ୍କ ଦେହରେ ପ୍ରବେଶ କଲା ଓ ସେ ଅଜ୍ଞାନ ହୋଇ ପଡ଼ିଲେ । ଚନ୍ଦ୍ରଗୁପ୍ତ ସଙ୍ଗେ ସଙ୍ଗେ ବୈଦ୍ୟଙ୍କୁ ଡ଼ାକିବାକୁ କହିଲେ, କିନ୍ତୁ ଚାଣକ୍ୟ ନିଷେଧ କଲେ ।

କିଛି ସମୟ ପରେ ବିଷରେ ଘାରିହୋଇ ସେ ପ୍ରାଣତ୍ୟାଗ କଲେ । ଚାଣକ୍ୟ ସୁଯୋଗ ଦେଖି ପର୍ବତକଙ୍କ ରାଜ୍ୟ ମଧ୍ୟ ଚନ୍ଦ୍ରଗୁପ୍ତଙ୍କ ରାଜ୍ୟରେ ମିଶାଇ ନେଲେ ।

ନନ୍ଦରାଜାଙ୍କ ଶାସନର ସମାପ୍ତି ଘଟିବା ସଙ୍ଗେ ସଙ୍ଗେ ରାଜ୍ୟରେ କେତେକ ଲୋକ ଗୋଳମାଳ ସୃଷ୍ଟି କରୁଥା'ନ୍ତି । ସେମାନେ ଥିଲେ ନନ୍ଦଙ୍କ ଅନୁଚର । ସେମାନଙ୍କୁ ଦମନ କରିବା ପାଇଁ ଚାଣକ୍ୟ ଜଣେ ତାନ୍ତ୍ରିକଙ୍କୁ ନିଯୁକ୍ତ କଲେ । ସେ ଗୃହଦ୍ୱାରରେ ଅଗ୍ନି ସ୍ଥାପନା କରି କିଛି କିଛି ମନ୍ତ୍ର ବୋଲି ସେହି ଅରାଜକତାକୁ ଦମନ କଲେ ।

ରାଜକୋଷରେ ଧନ ବହୁତ କମ୍ ଥାଏ । ରାଜ୍ୟର କେତେକ ଧନୀ ବ୍ୟକ୍ତି ବହୁତ ସୁନା ଓ ରୂପା ସବୁ ଲୁଚାଇ ରଖିଥା'ନ୍ତି । ଚାଣକ୍ୟ ଏକ ବିରାଟ ଭୋଜି ପାଇଁ ସେମାନଙ୍କୁ ନିମନ୍ତ୍ରଣ କଲେ । ଚାଣକ୍ୟ ସେମାନଙ୍କୁ ଅତ୍ୟଧିକ ମଦ୍ୟପାନ କରାଇଲେ । ଅର୍ଦ୍ଧଚେତନ

ଅବସ୍ଥାରେ ଚାଣକ୍ୟ ସେମାନଙ୍କ ଧନ ରଖିବାର ଗୁପ୍ତ ସ୍ଥାନ ଇତ୍ୟାଦି ଜାଣିନେଲେ ଓ ସେଠାରୁ ଧନ ଚୁହାଇ ଆଣି ରାଜକୋଷ ଭର୍ତ୍ତି କଲେ ।

ଥରେ ରାଜ୍ୟରେ ଦୁର୍ଭିକ୍ଷ ପଡ଼ିଲା । ଲୋକମାନେ ହାହାକାର କଲେ । ସେଠାରେ ଗୋଟିଏ ଜୈନ ଆଶ୍ରମ ଥାଏ । ଗୁରୁ ସୁସ୍ଥିତ ଶିଷ୍ୟମାନଙ୍କୁ କହିଲେ, "ଏ ରାଜ୍ୟର ଯେପରି ପରିସ୍ଥିତି ଭିକ୍ଷା ମିଳିବା କଷ୍ଟକର । ତମେମାନେ ଏ ରାଜ୍ୟ ଛାଡ଼ି ଦୂରବର୍ତ୍ତୀ ରାଜ୍ୟକୁ ଚାଲିଯାଇ ଜୀବନ ବଞ୍ଚାଅ ।" ସମସ୍ତେ ଚାଲିଗଲେ; କିନ୍ତୁ ଦୁଇଜଣ ଶିଷ୍ୟ ଗୁରୁଙ୍କୁ ଛାଡ଼ି ଗଲେ ନାହିଁ ।

ଏଣେ ଭିକ୍ଷା ମିଳୁ ନଥାଏ । ସେ ଦୁଇଜଣଙ୍କ ପାଖରେ ଏକ ପ୍ରକାର ଅଞ୍ଜନ ଥାଏ । ତାକୁ ଆଖିରେ ଲଗାଇଲେ ସେମାନେ ଅଦୃଶ୍ୟ ହୋଇ ଯାଇ ପାରିବେ । ସେହି ଅଞ୍ଜନ ଆଖିରେ ଦେଇ ଦୁଇଜଣ ରାଜଭବନକୁ ଚାଲି ଯାଉଥିଲେ ଓ ରାଜା ଚନ୍ଦ୍ରଗୁପ୍ତଙ୍କ ସହିତ ଅଦୃଶ୍ୟ ଭାବରେ ଭୋଜନ କରୁଥିଲେ ।

କିଛିଦିନ ପରେ ଚାଣକ୍ୟ ଲକ୍ଷ୍ୟ କଲେ ଚନ୍ଦ୍ରଗୁପ୍ତଙ୍କ ସ୍ୱାସ୍ଥ୍ୟ ଖରାପ ହୋଇ ଯାଉଛି । ସେ ତାଙ୍କୁ ଏହାର କାରଣ ପଚାରିଲେ ।

ଚନ୍ଦ୍ରଗୁପ୍ତ କହିଲେ, "ମୁଁ ମଧ୍ୟ ଏହାର କାରଣ ଜାଣି ନାହିଁ । କିନ୍ତୁ ଏତିକି କହି ପାରିବି ଯେ ସବୁଦିନେ ଯେତେ ଖାଦ୍ୟ ଖାଏ ସେଥିରେ ମୋ ପେଟ ଭରେ ନାହିଁ । ମନେହୁଏ ସବୁ ଖାଦ୍ୟ ଯେପରି ମୋ ପେଟକୁ ଯାଉନାହିଁ ।"



ଚାଣକ୍ୟ ଅନୁମାନ କଲେ ଯେ କେହି କେହି ବୋଧେ ଅଦୃଶ୍ୟ ରୂପରେ ଚନ୍ଦ୍ରଗୁପ୍ତଙ୍କ ଖାଦ୍ୟ ଚୋରି କରୁଛି । ତେଣୁ ସେ ପରଦିନ ତାଙ୍କର ଖାଦ୍ୟ ଖାଇବାର ସ୍ଥାନ ଚାରିପାଖରେ କିଛି ଧୂଳିଗୁଣ୍ଡ ବିଞ୍ଚି ଦେଲେ । ଖାଇବା ପରେ ଜଣା ପଡ଼ିଲା ଦୁଇଜଣଙ୍କ ପାଦ ଚିହ୍ନ ପଡ଼ିଛି ।

ପରଦିନ ଚନ୍ଦ୍ରଗୁପ୍ତ ଯେତେବେଳେ ଭୋଜନ କରିବାକୁ ବସିଲେ ଚାଣକ୍ୟ ସେଠାରେ କିଛିଟା ମରିଚ ଧୂଆଁ ଦେଲେ । ସମସ୍ତିଙ୍କ ଆଖିରୁ ପାଣି ବୋହିଲା । ଏଣେ ଜୈନ ସନ୍ନ୍ୟାସୀଙ୍କ ଆଖିରୁ ପାଣି ବୋହିବାରୁ ଅଞ୍ଜନ ଧୋଇଗଲା ଓ ସେମାନଙ୍କୁ ସମସ୍ତେ ଦେଖି ପାରିଲେ । ସମସ୍ତେ ରାଗିଗଲେ । କିନ୍ତୁ ଚାଣକ୍ୟ



ସେମାନଙ୍କୁ କିଛି ଶାସ୍ତି ନ ଦେଇ ବାହାର କରିଦେଲେ ।

ଚନ୍ଦ୍ରଗୁପ୍ତଙ୍କର ଅବଶୋଷ ରହିଲା ଯେ ସେ ରାଜା ହୋଇ ଅନ୍ୟର ଉଚ୍ଛିଷ୍ଟ ଖାଇଲେ । କିନ୍ତୁ ଚାଣକ୍ୟ ତାଙ୍କୁ ସାନ୍ତ୍ୱନା ଦେଇ କହିଲେ କି ଅନ୍ୟ ଦିଗରେ ଭିକ୍ଷା ଦେବାର ପୁଣ୍ୟ ମଧ୍ୟ ଅର୍ଜ୍ଜନ କରାଗଲା । ତଥାପି ମଧ୍ୟ ଚାଣକ୍ୟ ସୁସ୍ଥିତାଚାର୍ଯ୍ୟଙ୍କ ପାଖକୁ ଆକ୍ଷେପ କରି ଚିଠି ଲେଖି ସବୁ ଜଣାଇଲେ ।

ଗୁରୁ ସୁସ୍ଥିତ ଚାଣକ୍ୟଙ୍କୁ ଏକ ଉତ୍ତର ଲେଖି ପଠାଇଲେ । ସେ ଲେଖିଲେ, "ଦୋଷ ତ ଆପଣଙ୍କ ନାଗରିକଙ୍କର ! ମୋ ଶିଷ୍ୟମାନେ ଭିକ୍ଷା ପାଉଥିଲେ କାହିଁକି ଏପରି ଘଟଣା ଘଟିଥା'ନ୍ତା ?" ସେହି ଦିନଠାରୁ ପାଟଳୀପୁତ୍ର ରାଜ୍ୟରେ ଜୈନ ଭିକ୍ଷୁମାନଙ୍କ ପାଇଁ ଭିକ୍ଷାର ସବୁ ପ୍ରକାର ବ୍ୟବସ୍ଥା କରାଗଲା ।

ଚନ୍ଦ୍ରଗୁପ୍ତଙ୍କୁ କେହି କାଳେ ବିଷ ପ୍ରୟୋଗ କରି ମାରି ଦେବ ସେଥିପାଇଁ ତାଙ୍କ ଖାଦ୍ୟରେ ପ୍ରତିଦିନ କିଞ୍ଚିତ୍ ବିଷ ମିଶା ହୋଇଥାଏ । ତା'ହେଲେ କ୍ରମେ ଶରୀରରେ ଏକ ବିଷାକ୍ତ ଅଂଶ ରହିବ ଯାହା ବାହାରୁ ପ୍ରୟୋଗ କରା ହୋଇଥିବା ବିଷକୁ ଅକାମି କରି ଦେବ । ଏସବୁ କିନ୍ତୁ ଚନ୍ଦ୍ରଗୁପ୍ତ ଜାଣି ନଥିଲେ ।

ଦିନେ ଚନ୍ଦ୍ରଗୁପ୍ତ ଖାଉଥିବା ବେଳେ ତାଙ୍କର ଗର୍ଭବତୀ ପତ୍ନୀ ଧୁର୍ଦ୍ଧରା ସ୍ୱାମୀଙ୍କ ଥାଳିରୁ କିଛି ଖାଦ୍ୟ ଖାଇଦେଲେ । ତତ୍‌କ୍ଷଣାତ୍ ବିଷ ପ୍ରଭାବରୁ ତାଙ୍କର ପ୍ରାଣବାୟୁ ଉଡିଗଲା । କିନ୍ତୁ ଚାଣକ୍ୟ ଶୀଘ୍ର ଶୀଘ୍ର ତାଙ୍କ ପେଟ ଚିରି ଛୁଆଟିକୁ ଜୀବନ୍ତ ବାହାର କରି ଆଣିଲେ । ବିଷର ବିନ୍ଦୁ ପିଲା ଭିତରକୁ ପ୍ରବେଶ କରି-ଥିବାରୁ ତା'ର ନାମ ରଖାଗଲା ବିନ୍ଦୁସାର ।

ଚନ୍ଦ୍ରଗୁପ୍ତଙ୍କ ମୃତ୍ୟୁ ପରେ ଚାଣକ୍ୟ ବିନ୍ଦୁସାରଙ୍କ ରାଜ୍ୟାଭିଷେକ କରାଇଲେ । ସେ କିନ୍ତୁ ବେଶି ସମୟ ମନ୍ତ୍ରୀ ପଦରେ ରହିବାକୁ ଚାହୁଁ ନଥିଲେ । ସୁବନ୍ଧୁ ନାମକ ଏକ ବ୍ୟକ୍ତିଙ୍କୁ ସେ ରାଜନୀତି ଶିକ୍ଷା ଦେବାକୁ ଲାଗିଲେ । ସୁବନ୍ଧୁ କିନ୍ତୁ ଶୀଘ୍ର ମନ୍ତ୍ରୀତ୍ୱ ପ୍ରାପ୍ତ କରିବା ପାଇଁ ଚାଣକ୍ୟଙ୍କ ବିରୁଦ୍ଧରେ ରାଜାଙ୍କୁ ନାନା କଥା କହିବାକୁ ଲାଗିଲେ । ବିଶେଷତଃ ବିଷ ପ୍ରୟୋଗ

ତ ମା'ଙ୍କର ପେଟ ଚିରିବା କଥା ଇତ୍ୟାଦି । ବିନ୍ଦୁସାର ଏକଥା ଅନ୍ୟମାନଙ୍କଠାରୁ ମଧ୍ୟ ଶୁଣିବାକୁ ପାଇଲେ ଓ ଚାଣକ୍ୟଙ୍କ ପ୍ରତି ତାଙ୍କର ପୂର୍ବପରି ଆଉ ସମ୍ମାନ ରହିଲା ନାହିଁ ।

ସୁବନ୍ଧୁଙ୍କର ପ୍ରଭାବ ରାଜାଙ୍କ ଉପରେ ପଡ଼ିବାର ଦେଖି ଚାଣକ୍ୟ କ୍ରମେ ଦୂରେଇ ଗଲେ ଓ ସନ୍ନ୍ୟାସ ଜୀବନ ଯାପନ କଲେ । କିନ୍ତୁ ସୁବନ୍ଧୁଙ୍କର ସେହି ନୀଚ ଆଚରଣକୁ ସେ କ୍ଷମା କରି ନଥିଲେ । ସୁବନ୍ଧୁଙ୍କ ପତନ ପାଇଁ ସେ କିଛି ଉପାୟ ପାଞ୍ଚିଲେ । ସେ ଏକ ତାଳ-ପତ୍ରରେ କିଛି ଲେଖି ତାକୁ କୌଣସି ଏକ ସୁଗନ୍ଧିତ ଦ୍ରବ୍ୟରେ ବୁଡ଼ାଇ ଏକ ଛୋଟ ପେଟିକାରେ ରଖିଲେ ଓ ସେହି ପେଟିକାଟିକୁ ନିଜ ସିନ୍ଦୁକରେ ବନ୍ଦ କରି ତାଲା ପକାଇଲେ । ତା'ପରେ ନିଜର ସମସ୍ତ ସମ୍ପତ୍ତି ଗରିବମାନଙ୍କୁ ବାଣ୍ଟି ଦେଇ ସେ ନଗର ବାହାରକୁ ଯାଇ ଏକ ପାଉଁଶଗଦା ଉପରେ ବସି ଧ୍ୟାନ କଲେ ।

ଏଣେ ବିନ୍ଦୁସାର ଚାଣକ୍ୟଙ୍କ ବିଷୟରେ ଅନେକ କଥା ସଂଗ୍ରହ କରି ବୁଝିଲେ ଯେ ପ୍ରକୃତରେ ଏ ରାଜ୍ୟ ଓ ସେଥିରେ ତାଙ୍କ ପିତାଙ୍କର ରାଜା ହେବା ଇତ୍ୟାଦି ପଛରେ ଚାଣକ୍ୟଙ୍କର ଯତ୍ନହିଁ ଏକମାତ୍ର ସତ୍ୟ । ତେଣୁ ସେ ପଶ୍ଚାତାପ କଲେ ଓ ନଗର ବାହାରକୁ ଯାଇ ଚାଣକ୍ୟଙ୍କୁ କହିଲେ, "ମହାତ୍ମା, ଆପଣ ପୁଣି ମନ୍ତ୍ରୀପଦ ଗ୍ରହଣ କରନ୍ତୁ ।"



କିନ୍ତୁ ଚାଣକ୍ୟ ନିଜର ସଂକଳ୍ପରୁ ବିଚ୍ୟୁତ ହେଲେ ନାହିଁ । ବିନ୍ଦୁସାର ବିଫଳ-ମନୋରଥ ହୋଇ ଫେରି ଆସିବାକୁ ବାଧ୍ୟ ହେଲେ । ତାଙ୍କ ଦୁଃଖ ଦେଖି ସୁବନ୍ଧୁ କହିଲେ, "ମହାରାଜ, ମୁଁ ତାଙ୍କୁ ଫେରାଇ ଆଣିବି ।"

ସୁବନ୍ଧୁ ଚାଣକ୍ୟଙ୍କ ପାଖରେ ପହଞ୍ଚି ବହୁତ ଅନୁନୟ ବିନୟ କଲେ ମଧ୍ୟ ସେ କିଛି ଶୁଣିଲେ ନାହିଁ । ଇତିମଧ୍ୟରେ ପାଉଁଶ ଗଦା ଭିତରେ ଥିବା ଏକ ଅଗ୍ନି କଣା କ୍ରମେ ବଢ଼ି ବଢ଼ି ପ୍ରବଳ ଅଗ୍ନିରେ ପରିଣତ ହୋଇ ଚାଣକ୍ୟଙ୍କୁ ଭସ୍ମ କଲା । ସୁବନ୍ଧୁଙ୍କ ମନରେ ପ୍ରଥମେ ମନ୍ତ୍ରୀତ୍ୱ ଅଧିକାର କରିବାର କାମନା ଥିଲା । ତେଣୁ ଚାଣକ୍ୟଙ୍କୁ ନିଜ ରାସ୍ତାରୁ ହଟାଇ ଦେଇ

ରାଜାଙ୍କ ଉପରେ ନିଜର ପ୍ରଭାବ ପକାଇଲେ । ତା'ପରେ ଚାଣକ୍ୟଙ୍କ ସମ୍ପତ୍ତି ସବୁ ଉପରେ ମଧ୍ୟ ତାଙ୍କର ଲୋଲୁପ ଦୃଷ୍ଟି ପଡ଼ିଥିଲା । ତେଣୁ ଚାଣକ୍ୟଙ୍କ ମୃତ୍ୟୁ ପରେ ସେ ରାଜାଙ୍କ ଅନୁମତି ନେଇ ତାଙ୍କ ଘର ଖୋଲିଲେ । ସେ ଜାଣି ନଥିଲେ ଯେ ଚାଣକ୍ୟ ତାଙ୍କର ସବୁ ସମ୍ପତ୍ତି ଗରିବଙ୍କୁ ବାଣ୍ଟି ଦେଇଛନ୍ତି ।

ତଥାପି ସେ ଖୋଜିବାରେ ଲାଗିଲେ ଓ ସିନ୍ଦୁକଟି ତାଙ୍କ ଆଖିରେ ପଡ଼ିଲା । ସଙ୍ଗେ ସଙ୍ଗେ ସେ ସିନ୍ଦୁକ ଖୋଲି ପେଟିକାଟି ପାଇଲେ ଓ ପେଟିକା ଖୋଲି ସୁଗନ୍ଧିତ ତାଳପତ୍ରଟି ପାଇଲେ । ସେ କୌତୁହଳୀ ହୋଇ ତାକୁ ପଢ଼ିବାକୁ ଚାହିଁଲେ । ସେଥିରେ ଲେଖାଥିଲା, "ଯିଏ ସନ୍ନ୍ୟାସୀ ଜୀବନ ବିତାଉ ନ ଥିବ ଓ ଏହି ସୁଗନ୍ଧ ଶୁଙ୍ଘିବ ତାହାର ମୃତ୍ୟୁ ହେବ ।"

ଏକଥାର ସତ୍ୟତା ଜାଣିବା ପାଇଁ ସେ ତାଳପତ୍ରକୁ ଜଣେ ସାଧାରଣ ଲୋକର ନାକ ପାଖରେ ଧରିଲେ । ସେ ମରିଗଲା । ସେହି ପେଟିକାସ୍ଥିତ ଦ୍ରବ୍ୟର ପ୍ରଭାବକୁ ନଷ୍ଟ କରିବାକୁ ସେ ବହୁତ ପ୍ରଯତ୍ନ କଲେ । କିନ୍ତୁ କିଛି ଫଳ ହେଲା ନାହିଁ । ସୁବନ୍ଧୁ ଭାବିଲେ ଯେ କିଛିଟା ଗନ୍ଧ ତାଙ୍କ ନାକରେ ପଶିଛି, ସେ ହୁଏତ ମରିଯିବେ । ତେଣୁ ସେ ମଧ୍ୟ ମନ୍ତ୍ରୀତ୍ୱ ଛାଡ଼ି ଜୈନ ଗୁରୁଙ୍କ ପାଖକୁ ଯାଇ ସନ୍ନ୍ୟାସ ଗ୍ରହଣ କଲେ । ଅନ୍ୟ ସନ୍ନ୍ୟାସୀମାନେ ଜାଣିଥିଲେ ଯେ ସୁବନ୍ଧୁ କେବଳ ପ୍ରାଣ ଭୟରେ ସନ୍ନ୍ୟାସ ନେଇଛନ୍ତି, ପ୍ରକୃତ ବୈରାଗ୍ୟ ବା ଈଶ୍ୱର ଭକ୍ତି ଯୋଗୁ ନୁହେଁ । ତେଣୁ ସେମାନଙ୍କର ତାଙ୍କ ପ୍ରତି କୌଣସି ସମ୍ମାନ ନ ଥାଏ ।

ଚାଣକ୍ୟଙ୍କ ପ୍ରତି ବିଶ୍ୱାସଘାତକତା କରି ସେ ସୁଖୀ ରହି ନଥିଲେ । ଅବଶ୍ୟ ଚାଣକ୍ୟ ଭସ୍ମ ହୋଇଯାଇଥିଲେ, କିନ୍ତୁ ସେ ସୁବନ୍ଧୁଙ୍କ ଉପରେ ପୁରା ପ୍ରତିଶୋଧ ନେଲେ । ଯେତେଦିନ ସୁବନ୍ଧୁ ବଞ୍ଚି ରହିଲେ ସେତେଦିନ କେବଳ ଅନୁତାପ, ଭୟ ଓ ଦୁଃଖରେ ଦଗ୍ଧ ହୋଇ ଜୀବନ ବିତାଇଲେ ।



ପଶୁ-ପକ୍ଷୀ:

# ଟାସ୍‌ମାନିୟାର କ୍ରୁର ଜନ୍ତୁଦଳ

ଅଷ୍ଟ୍ରେଲିଆର ଆଗ୍ନେୟ କୋଣରୁ ଥିବା ଟାସ୍‌ମାନିଆ ଦ୍ୱୀପର ବାତାବରଣ ଖୁବ୍ ପ୍ରଶାନ୍ତ । କିନ୍ତୁ ସେହି ପ୍ରଶାନ୍ତ ଅଞ୍ଚଳହିଁ ଗୋଟାଏ ପ୍ରକାର ଭୟଙ୍କର ହେଠା ଓ ବାଘୁଆ ବିଲେଇ (ଟାଇଗାର କ୍ୟାଟ୍) ଭଳି ଜୀବଜନ୍ତୁଙ୍କ ଆଶ୍ରୟ ସ୍ଥଳ ।

ଟାସ୍‌ମାନିଆ ହେଠା ଆକାରରେ ବେଶ୍ ବଡ଼ । ଦେଖିବାକୁ କିନ୍ତୁ ସାଧାରଣ । ମାଈ ହେଠାର ସ୍ତନ ପାଖରେ ଥାଏ ଗୋଟିଏ ଥଳି । ଶାବକ ଜନ୍ମ ହେବା ପରେ ଛଅମାସ ପର୍ଯ୍ୟନ୍ତ ଏହି ଥଳିରେହିଁ ରହିଥାଏ । ସର୍ବଦା ମା'ର ସ୍ତନ ଶାବକର ମୁହଁରେ ଥାଏ । ଯେତେବେଳେ ଭୋକ ହୁଏ, ସେତେବେଳେହିଁ ସ୍ୱାଧୀନ ଭାବରେ ଦୁଗ୍ଧ ପାନ କରେ । ରାତିଯାକ ଏମାନେ ଗୁଂଫା ଭିତରେ ରହନ୍ତି ଓ ଦିନ ହେଲେ ଯାଇ ବଣରେ ବୁଲନ୍ତି । ଏକଦା ଏମାନେ ସାରା ଅଷ୍ଟ୍ରେଲିଆରେ ବ୍ୟାପି ରହିଥିଲେ ।

'ଟାସ୍‌ମାନିଆ ଡେଭିଲ୍' ବୋଲି ଆଉ ଗୋଟିଏ ଜନ୍ତୁର ସ୍ତନକୁ ବି ଥଳିଟିଏ ଆବୋରି ରଖିଥାଏ । ଏହାର ମୁଣ୍ଡଟିମାନ ବଡ଼ ଏବଂ ଦେହ ବେଶ୍ ମଜ୍‌ବୁଦ । କାନ ଦୁଇଟି ବଡ଼ ବଡ଼ । ମୁହଁଯାକ ଲୁମ ଥାଏ । କାନ୍ଧ ଓ ପିଠିରେ ଧଳା ଦାଗ ଥାଏ । କଳା ଓ ବାଇଗଣି ରଙ୍ଗର ଏ ଜନ୍ତୁ କେବଳ ରାତିରେ ଆହାର ସନ୍ଧାନରେ ବାହାରେ । ଖରାରେ ଏମାନେ କିଛି ଦେଖିପାରନ୍ତି ନାହିଁ ଟାସ୍‌ମାନିଆ ଡେଭିଲ୍ ଅତ୍ୟନ୍ତ ହିଂସ୍ର । ଏମାନେ ସବୁବେଳେ ନାଚକୁଦ କରୁଥାନ୍ତି ବୋଲି ଅନେକେ ଡେଭିଲ୍ ଶାବକମାନଙ୍କୁ ପାଳନ କରନ୍ତି ।

ବାଘୁଆ ବିଲେଇ ଏ ଅଞ୍ଚଳର ଆଉ ଏକ ଜୀବ । ଏମାନେ ଦେଖିବାକୁ ବିଲେଇ ପରି । ଏମାନଙ୍କ ଦେହର ରଙ୍ଗ ବାଇଗଣି । ତହିଁ ଉପରେ ଧଳା ଛାପ ଥାଏ । କାନ ଛୋଟ, କିନ୍ତୁ ଲାଞ୍ଜ ଦୀର୍ଘ ।



# ଫଟୋ-ପରିଚୟ-ପ୍ରତିଯୋଗିତା : ପୁରସ୍କାର ଟ. ୫୦

ପୁରସ୍କୃତ ପରିଚୟୋକ୍ତି ଜୁନ୍ ୧୯୮୨ ସଂଖ୍ୟାରେ ପ୍ରକାଶ ପାଇବ



Pranlal K. Patel



A. L. Syed

★ ଉଭୟ ଚିତ୍ର ପାଇଁ ଉପଯୁକ୍ତ ପରିଚୟୋକ୍ତି ଦୁଇ ଚାରି ଧାଡ଼ିରେ ଲେଖା ହୋଇଥିବ ଏବଂ ପରସ୍ପର ସମ୍ବନ୍ଧିତ ହୋଇଥିବ ★ ଏପ୍ରିଲ୍ ୧୦ ସୁଦ୍ଧା ପରିଚୟୋକ୍ତି ପହଞ୍ଚିବା ଦରକାର।
★ ସର୍ବାଧିକ ଉପଯୁକ୍ତ ବିବେଚିତ ପରିଚୟୋକ୍ତି ପାଇଁ ଟ. ୫୦-୦୦ ପୁରସ୍କାର ଦିଆଯିବ।
★ ପରିଚୟୋକ୍ତି ସହ ପ୍ରେରକର ନାମ ଓ ଠିକଣା ପୋଷ୍ଟକାର୍ଡରେ ଲେଖା ହୋଇ ଚନ୍ଦାମାମା ଫଟୋ ପରିଚୟ ପ୍ରତିଯୋଗିତା, ମାଡ୍ରାସ-୬୦୦୦୨୬ ଠିକଣାରେ ଆସିବା ଆବଶ୍ୟକ।

---

ଫେବୃଆରି '୮୨ ପ୍ରତିଯୋଗିତାର ଫଳ

ପ୍ରଥମ ଚିତ୍ର : ନ ମାନିଲେ ପଥର,

ଦ୍ୱିତୀୟ ଚିତ୍ର : ମାନିଲେ ଠାକୁର !

ପୁରସ୍କାର ବିଜୟୀ : କବିରାଜ ସାହୁ, ଜଟଣୀ।

ବିଜୟୀଙ୍କୁ ଅଭିନନ୍ଦନ; ସମସ୍ତ ପ୍ରତିଯୋଗୀଙ୍କୁ ଧନ୍ୟବାଦ।

## ପ୍ରଶ୍ନମାଳାର ଉତ୍ତର

୧. ଅନନ୍ତ ବର୍ମଣ ଚୋଡ଼ଗଙ୍ଗ। ୨. ନଅଙ୍କ ଦୁର୍ଭିକ୍ଷ। ୩. ସାର୍ ଫ୍ରାନ୍ସିସ୍ ଡ୍ରେକ୍।
୪. ଆବେଲ୍ ଟାସ୍‌ମେନ୍। ୫. ଭିକ୍ଟୋରିଆ ଜଳପ୍ରପାତ।

Printed by B.V. REDDI at Prasad Process Private Ltd., 188 N.S.K. Salai, Madras 600 026 (India) and Published by B. VISWANATHA REDDI on behalf of CHANDAMAMA PUBLICATIONS, Chandamama Buildings, Vadapalani, Madras 600 026 (India). Controlling Editor: NAGI REDDI.


चन्दामामा
చందమామ
चांदोबा
চাঁদমামা
CHANDAMAMA

JAHNAMAMU (Oriya) APRIL 1986 Regd. No. M. 9098